"ଧନ୍ୟ ରଥେ ! ତୁମ୍ଭ ଜନ୍ମ ଶୁଭକ୍ଷଣେ,
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ ।
ତୁମ୍ଭ ମାଟି-ଦେହ ଗ୍ରାସିଛୁ ଶ୍ମଶାନ,
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।"

—ରାଧାନାଥ

---

# କବିସୂର୍ଯ୍ୟ ବଳଦେବ

ସତ୍ୟନାରାୟଣ ମହାପାତ୍ର, ଏମ୍. ଏ.

# କବିସୂର୍ଯ୍ୟ ବଳଦେବ

* ଲେଖକ

ସତ୍ୟନାରାୟଣ ମହାପାତ୍ର, ଏମ୍. ଏ.

* ପ୍ରକାଶକ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର
ବିନୋଦବିହାରୀ,
କଟକ-୨



* ପ୍ରଥମ ପ୍ରକାଶ

ଅଗଷ୍ଟ ପନ୍ଦର, ୧୯୭୭

* ମୁଦ୍ରଣ

ନିଉ ପ୍ରେସ
କାଜି ବଜାର, କଟକ-୧

* ମୂଲ୍ୟ—ଟ ୨-୫୦

# ସୂଚୀ

# ପୃଥିବୀରେ ପ୍ରଥମ ଆଲୋକ

ଜଡ ହୋଇଗଲେ ସମସ୍ତ ଲୋକେ
ରଡ ଦେଲେ ଜ୍ୟୋତିରଙ୍ଗଣ ଘୋକେ
ହଡ ହୋଇଗଲା ପୂଜନ ପେଜ
ଖଡ ହୋଇଲେଣି ମୃଣାଳ ବ୍ରଜ
ଅବିବେକ ବେଦେ
ନବୀନ ସୃଷ୍ଟି କି କଲେ କି ଏବେ ?

ଏହାର ରଚୟିତା ଆମ୍ଭାଭିମଙ୍କ କବି, କବିସୂର୍ଯ୍ୟ ବଳଦେବ ରଥଙ୍କ ସଠିକ୍ ଜନ୍ମତିଥି ଏପର୍ଯ୍ୟନ୍ତ ସର୍ବବାଦୀସମ୍ମତ ହୋଇପାରି ନାହିଁ । ତାଙ୍କ ନାତିଙ୍କ କଥା ଅନୁଯାୟୀ ସେ ଜନ୍ମ ହୋଇଥିଲେ ୧୭୯୯ ମସିହା, ବୁଧ ଓଡ଼ିଆମାନଙ୍କ ଏକ ପବିତ୍ର ତିଥି ମାଘ ମାସର ଶ୍ରୀପଞ୍ଚମୀ ଦିନ । ମାଘ ମାସ ଶ୍ରୀପଞ୍ଚମୀ ତିଥିକୁ ତାଙ୍କର ଜନ୍ମତିଥି ହିସାବରେ ଗ୍ରହଣ କରାଯିବାରେ ଅନେକ ସମାଲୋଚକଙ୍କର ଦ୍ୱିମତ ନାହିଁ । କିନ୍ତୁ ଜନ୍ମ ମସିହା ୧୭୯୯ ବଦଳରେ ୧୭୮୯ ହେବାର ସମ୍ଭାବନାକୁ ଅନେକ ଆଲୋଚକ ଅଧିକ ଗୁରୁତ୍ୱ ପ୍ରଦାନ କରିଅଛନ୍ତି । ସେମାନଙ୍କ ମତରେ କବିସୂର୍ଯ୍ୟ ୧୭୮୯ ମସିହାରେ ଜନ୍ମ ଗ୍ରହଣ କରି ମୃତ୍ୟୁ ବରଣ କରିଥିଲେ ୧୮୪୫ ମସିହାରେ । ବିଭିନ୍ନ ଆନୁଷଙ୍ଗିକ ଘଟଣାବଳୀରୁ ଏ ମତ ଅଧିକାଂଶରେ ସ୍ପଷ୍ଟ ।

ବଳଦେବଙ୍କ ପିତାଙ୍କ ନାମ ଥିଲା ଉଜ୍ଜ୍ୱଳ ରଥ ଓ ମାତା ଥିଲେ ଗଞ୍ଜାମ ଆଠଗଡ଼ର ପ୍ରଖ୍ୟାତନାମା ତାନ୍ତ୍ରିକ ତଥା ପଣ୍ଡିତ ତ୍ରିପୁରାରି ଉତାଙ୍କ କନ୍ୟା ଶ୍ରୀମତୀ ରତ୍ନମଣି ଦେବୀ ।

କବିସୂର୍ଯ୍ୟ ଗଞ୍ଜାମର ବଡ଼ଖେମୁଣ୍ଡିଠାରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ତାଙ୍କର ପୂର୍ବପୁରୁଷ ଶ୍ରୀ ବଳଭଦ୍ର ରଥ ବାଜପେୟୀ ପୁରୀ ଜିଲ୍ଲାର ରଥସାମନ୍ତ ବଂଶର ପ୍ରତିଷ୍ଠାତା । ନିଜର ଅଧ୍ୟବସାୟ ଓ ପାଣ୍ଡିତ୍ୟ ବଳରେ ସେ ପୁରୀ ଗଜପତି ରାଜାଙ୍କର ଗୁରୁ ପଦରେ ପ୍ରତିଷ୍ଠିତ ହୋଇପାରିଥିଲେ । ଉତ୍କଳର ଚଳନ୍ତି ବିଷ୍ଣୁ ଗଜପତି ରାଜାଙ୍କର ଗୁରୁ ହେବାଲାଗି ଯେଉଁ ଶାସ୍ତ୍ରଜ୍ଞାନ ତଥା ଅନ୍ୟାନ୍ୟ ସାଧାରଣ ନିଷ୍ଠା ଆବଶ୍ୟକ, ସେ ସବୁର ଅଧିକାରୀ ହୋଇପାରିଥିଲେ ବଳଭଦ୍ର ରଥେ । ପୁରୀ ଗଜପତି ରାଜା ତାଙ୍କ ଉପରେ ଏତେ ପ୍ରୀତ ହୋଇଉଠିଥିଲେ ଯେ, ବ୍ରାହ୍ମଣ ସମାଜରେ କୌଳିନ୍ୟ ପ୍ରଥା "ସାମନ୍ତ" ପଦବୀର ପ୍ରଚଳନ କରାଇଥିଲେ ଏହାଙ୍କଠାରୁ ।

ବଳଭଦ୍ର ରଥଙ୍କ ଦ୍ୱିତୀୟା ସ୍ତ୍ରୀଙ୍କଠାରୁ ଉଦ୍ଭୂତ ଗୋଟିଏ କ୍ଷୀଣ ଧାରା କବିସୂର୍ଯ୍ୟଙ୍କ ପର୍ଯ୍ୟନ୍ତ ବହି ଆସିବାର ଇତିହାସ ଭାରି କୌତୂହଳପୂର୍ଣ୍ଣ । ତାଙ୍କର ପ୍ରଥମା ସ୍ତ୍ରୀଙ୍କର ଦୁଇଟି ପୁତ୍ର ଥିଲେ । ସନ୍ତାନସନ୍ତତିମାନଙ୍କ ଉପରେ ସାଧାରଣତଃ ପିତାମାତାଙ୍କ ପ୍ରଭାବ ପଡ଼ିଥାଏ । ବାଜପେୟୀଙ୍କ ପ୍ରଥମା ସ୍ତ୍ରୀଙ୍କ ଦୁଇ ପୁଅ ପିତାଙ୍କ ପ୍ରଭାବରେ କାଳକ୍ରମେ ପାଣ୍ଡିତ୍ୟ ଲାଭ କରିଥିଲେ । ପ୍ରଥମା ସ୍ତ୍ରୀଙ୍କର ଅକାଳ ମୃତ୍ୟୁ ହୋଇଥିଲା । ପଣ୍ଡିତ ମହୋଦୟ ତାଙ୍କର ପୁତ୍ରଦ୍ୱୟଙ୍କୁ ପୁରୀ ରାଜସଭାରେ ପ୍ରତିଷ୍ଠିତ କରାଇ ଦେଇପାରିଥିଲେ । ତାଙ୍କୁ ଯେତେବେଳେ ପ୍ରାୟ ସତୁରି ବର୍ଷ ସେ ପର୍ଯ୍ୟଟନ କରିବା

ଉଦ୍ଦେଶ୍ୟରେ ବାହାରିବା ଲାଗି ସ୍ଥିର କରିଥିଲେ । ସେତେବେଳେ ଦାକ୍ଷିଣାତ୍ୟ ତୀର୍ଥବହୁଳ ଅଞ୍ଚଳରୂପେ ଖ୍ୟାତିଲାଭ କରିଥିଲା । ତେଣୁ ଦକ୍ଷିଣ ଦିଗକୁ ଯିବାକୁ ମନସ୍ଥ କରି ବାଜପେୟୀ ଘରୁ ବାହାରିଥିଲେ ।

ଯାତ୍ରା ଆରମ୍ଭ କରିବାର ଅଳ୍ପ କିଛିଦିନ ପରେ ବାଣପୁର ନିକଟବର୍ତ୍ତୀ ଭୁଷଣ୍ଡପୁର ଗ୍ରାମରେ ଜଣେ ବ୍ରାହ୍ମଣଙ୍କ ଗୃହରେ ଆତିଥ୍ୟ ଗ୍ରହଣ କରିଥିଲେ । ବ୍ରାହ୍ମଣ ଜଣକ ପଣ୍ଡିତଙ୍କ ପାଣ୍ଡିତ୍ୟ ପୂର୍ବରୁ ଉତ୍ତମରୂପେ ଶୁଣିଥିଲେ । ତାହାଙ୍କୁ ନିକଟରେ ପାଇ ନିଜକୁ କୃତକୃତ୍ୟ ମନେ କରିଥିଲେ ଓ ନିଜ ଘରେ ଯେପରି ତାହାଙ୍କର ଅଣୁପ୍ରମାଣେ ଅସୁବିଧା ନ ହୁଏ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ । ତାଙ୍କର ଦଶ ବାର ବର୍ଷର କନ୍ୟାକୁ ନିଯୁକ୍ତ କରିଥିଲେ ବ୍ରାହ୍ମଣଙ୍କ ପରିଚର୍ଯ୍ୟା ଲାଗି । ସମସ୍ତଙ୍କ ଆନ୍ତରିକ ଆତିଥେୟିରେ ମୁଗ୍ଧ ହୋଇ ସାମନ୍ତ ମହୋଦୟ ସେଠାରେ କିଛି ଅଧିକ କାଳ ଅତିବାହିତ କରିଥିଲେ । ପ୍ରତିଦିନ ବଡ଼ଭୋରରୁ ଗାଧୋଇ ସାଧୋଇ ପଣ୍ଡିତଙ୍କ ପୂଜାର୍ଚ୍ଚନା ଲାଗି ଝିଅଟି ଫୁଲ ତୁଳସୀ ଆଣି ଦେଉଥିଲା । ଗୋଟାଏ ବଡ଼ ଟୌଣୀରେ (ଓଡ଼ିଶାର ଅନେକ ଅଞ୍ଚଳରେ ଟୌଣୀକୁ ମାଣ ବି କହନ୍ତି) । ବେଳେବେଳେ ବୃଦ୍ଧ ସାମନ୍ତ ବିବାହଯୋଗ୍ୟା ବାଳିକାକୁ ପରିହାସ କରୁଥିଲେ ସେ କାହିଁକି ବିବାହ କରୁନି ବୋଲି । ସାମନ୍ତଙ୍କ ପରିହାସ ଓ କଥୋପକଥନ ବାଳିକାଟି ତାର ମାତାଙ୍କୁ ପ୍ରତିଦିନ କହୁଥିଲା । ଦିନେ ତାର ବୁଦ୍ଧିମତୀ ଜନନୀ ତାକୁ ଉପଦେଶ ଦେଇଥିଲେ, ଯଦି ସାମନ୍ତ ପୁଣି ଥରେ କେବେ ସେଇ ପ୍ରଶ୍ନର ପୁନରାବୃତ୍ତି କରନ୍ତି, ତାହେଲେ ତାହାଙ୍କୁ ବିବାହ କରିବା ଲାଗି ଇଚ୍ଛା ଥିବା କଥା ସେ ପ୍ରକାଶ କରୁ ।

ତାପରେ ଦିନେ···

ଶୁଦ୍ଧ ସ୍ନାନ ପରେ ବାଳିକାଟି ପୂର୍ବାନୁସାରରେ ଫୁଲ ତୁଳସୀ ଟୋକେଇରେ ନେଇ ସାମନ୍ତଙ୍କ ନିକଟରେ ଉପସ୍ଥିତ ହୋଇଥିଲା । ସେ ସବୁ ତାହାଙ୍କ ପଦତଳେ ସମର୍ପଣ କରି ସବୁଦିନ ଭଳି ଭକ୍ତିଭରେ ପ୍ରଣାମ ଜଣାଇ ଫେରି ଆସିବାକୁ ଉଦ୍ୟତ ହେବାବେଳେ; ସାମନ୍ତ ସେଇ ପୂର୍ବ ପ୍ରଶ୍ନର ପୁନରାବୃତ୍ତି କରିଥିଲେ । ତାହାକୁ ପ୍ରଶ୍ନ କରିଥିଲେ ଯେ ଯଦି କାହାରିକୁ ବିବାହ କରିବାକୁ ତାର ଇଚ୍ଛା ଥାଏ, ସେ ପ୍ରକାଶ କଲେ ତାହା ତାଙ୍କ ପିତା'ଙ୍କୁ କହି କରାଇଦେବେ । ବାଳିକା ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲା, ସେ ସ୍ୱୟଂ ପଣ୍ଡିତଙ୍କୁ ବିବାହ କରିବାକୁ ଚାହେଁ । ସାମନ୍ତ ମହୋଦୟ ଝିଅଟିକୁ ଥଟ୍ଟା କରୁଥିବାରୁ ତାର ଉତ୍ତରକୁ ମଧ୍ୟ ଏକ ପରିହାସ ବୋଲି ମନେ କରିଥିଲେ । ସେ ପୁଣି କହିଥିଲେ, ନିତି ନିତି ଫୁଲ ତୁଳସୀ ଆଣି ଦେଉଥିବା ଟୋକେଇରେ ଯଦି ସେ ଟୋକେଇ ମୋହର ଆଣି ଦିଏ ତାହେଲେ ସେ ତାକୁ ବିବାହ କରିବେ । ଏହା କହିଥିଲେ ସମ୍ପୂର୍ଣ୍ଣ ପରିହାସରେ ।

କିନ୍ତୁ ତାର ଗତି ସତକୁ ସତ ଭିନ୍ନ ଦିଗ ଧରି ନେଇଥିଲା । ପରିହାସ ଦିନେ ସତ ହୋଇଥିଲା ।

ତା ପରଦିନ ସତକୁ ସତ ଉକ୍ତ ବାଳିକା ଟୋକେଇରେ ଟୋକେଇଏ ମୋହର ଓ ତା ଉପରେ ଫୁଲ ତୁଳସୀ ସଜାଇ ଅତି କଷ୍ଟରେ ନେଇ ସାମନ୍ତ ବାଜପେୟୀଙ୍କ ପାଦତଳେ ଅଜାଡ଼ି ଦେଇଥିଲା । କଳଭଦ୍ର ତାହା ଦେଖି ବିସ୍ମୟାଭିଭୂତ ହୋଇ ଉଠିଥିଲେ । ସେତେବେଳକୁ ସେ ଥିଲେ ସଂସାର ତ୍ୟାଗୀ । କିନ୍ତୁ ବାଳିକାର ପିତାମାତାଙ୍କର ଶତ ଅନୁରୋଧ ତଥା ତାଙ୍କ ପ୍ରତିଶ୍ରୁତ

ରକ୍ଷା ଲାଗି ପ୍ରାର୍ଥନା ପୁଣି ତାଙ୍କୁ ସହାୟ ହେବାଲାଗି ବାଧ୍ୟ କରିଥିଲା । ବୃଦ୍ଧ ବୟସରେ ପୁଣି ସାଂସାରିକ ବନ୍ଧନରେ ବାନ୍ଧି ହୋଇ ପଡ଼ିଥିଲେ ସେ ।

ସେ ସମ୍ବାଦ ଶୁଣି ବଳଭଦ୍ର ରଥଙ୍କ ପ୍ରଥମା ସ୍ତ୍ରୀଙ୍କ ପୁତ୍ରଦ୍ୱୟ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଉଠିଥିଲେ । ସେହା ମଧ୍ୟ ସ୍ୱାଭାବିକ । କେବଳ ଅସନ୍ତୁଷ୍ଟ ହୋଇ ନ ଥିଲେ, ସେମାନେ ମର୍ମାହତ ମଧ୍ୟ ହୋଇଥିଲେ । କାରଣ ପିତା ତାଙ୍କର ଜଣେ କୁଳୀନ ସମନ୍ତ ହୋଇ ମଧ୍ୟ ଏକ ନୀଚ କୁଳ କନ୍ୟାର ପାଣି ଗ୍ରହଣ କରିଥିଲେ । ସେତେବେଳେ ଆମ ସମାଜରେ ଏମିତିକ ପ୍ରତି ଜାତିରେ ଉଚ୍ଚନୀଚ ବାଛବିଚାର ଥିଲା । ବ୍ରାହ୍ମଣ ସମାଜ ଭିତରେ ମଧ୍ୟ ଅନେକଗୁଡ଼ିଏ ଶ୍ରେଣୀ ବିଭାଗ ରହିଥିଲା । ଉଚ୍ଚ ଶ୍ରେଣୀସ୍ଥ ବୋଲାଉଥିବା ବ୍ରାହ୍ମଣମାନେ ନୀଚ ଶ୍ରେଣୀସ୍ଥ ବ୍ରାହ୍ମଣମାନଙ୍କ ସହିତ ବିବାହାଦି କାରବାର କରୁ ନ ଥିଲେ । ସେ ପ୍ରଥା ଆଜି ପର୍ଯ୍ୟନ୍ତ ଆମ ସମାଜରେ ପ୍ରଚଳିତ । ସେଥିପାଇଁ ପଣ୍ଡିତ ରଥଙ୍କ ପୁତ୍ରମାନେ ପିତାଙ୍କୁ କେବଳ ଯେ ବାସନ୍ଦ କରିଥିଲେ ତା ନୁହଁ, ତାଙ୍କର ଜୀବିତାବସ୍ଥାରେ ହିଁ ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ କରିବାପାଇଁ କୁଣ୍ଠାବୋଧ କରି ନ ଥିଲେ ।

ଇଏ ଥିଲା ପଣ୍ଡିତ ବାଜପେୟୀଙ୍କ ଜୀବନର ଅନ୍ତିମ ପ୍ରହରର ଗୋଟିଏ ଦିଗ – ଏକ ନୀରସ, କ୍ଳିଷ୍ଟ ଦିଗ । ଅନ୍ୟ ସରସ ଦିଗଟି ଥିଲା ବ୍ରାହ୍ମଣଙ୍କର କୁମାରୀ କନ୍ୟା ରକ୍ତିମଣି ହେଲା, ସମନ୍ତଙ୍କ ପତ୍ନୀ ହେଲା, ଯଥା ସମୟରେ ଗର୍ଭବତୀ ମଧ୍ୟ ହେଲା । ଗର୍ଭବତୀ ହେବାର ମାତ୍ର ଦୁଇମାସ ପରେ ତା ମଥାର ସିନ୍ଦୂର ଲିଭିଯାଇଥିଲା ଚିରଦିନ ପାଇଁ । ସତୁରି ବର୍ଷର ବୃଦ୍ଧ ଆଉ କେତେ ଦିନ ବା ରହିଥାନ୍ତେ ?

ସେଇ ବ୍ରାହ୍ମଣ କନ୍ୟାଠାରୁ ଜାତ ହୋଇଥିବା ବାପନ୍ତେଓ୍ୱଣ୍ଡ ସନ୍ତାନର ପରପୁରୁଷ ଥିଲେ ଉଜ୍ଜ୍ୱଳ ରଥ, କବିସମ୍ରାଟ ବଳଦେବ ରଥଙ୍କ ପିତା ।

# କବି ସୂର୍ଯ୍ୟଙ୍କ ବାପା ଓ ଅଜା

କବି ସୂର୍ଯ୍ୟଙ୍କ ପୂର୍ବ ପୁରୁଷମାନେ ଅନେକ ଦିନଧରି ମଣିପୁର ଶାସନରେ ରାଜାନୁଗ୍ରହ ପାଇ ଆରାମରେ ସମସ୍ତ କଟାଉଥିଲେ । ସେମାନଙ୍କ ବଂଶବୃଦ୍ଧି ସଙ୍ଗେସଙ୍ଗେ ଉକ୍ତ ରାଜଦତ୍ତ ସମ୍ପତ୍ତି କ୍ରମେ-କ୍ରମେ ହ୍ରାସ ହେବାରେ ଲାଗିଥିଲା । ତେଣୁ ସମୟକ୍ରମେ ସେମାନେ ମଣିପୁର ଶାସନ ତ୍ୟାଗକରି ଗଞ୍ଜାମର ଖଡ଼ଜାତ ଅଞ୍ଚଳଗୁଡ଼ିକୁ ଚାଲି ଆସିଥିଲେ । ଜୀବିକା ନିର୍ବାହ ଲାଗି ସେମାନଙ୍କ ପାଇଁ ବ୍ରାହ୍ମଣ କର୍ମାନୁଷ୍ଠାନ ପ୍ରଭୃତିର ଦ୍ୱାର ଉନ୍ମୁକ୍ତ ଥିଲା । ସେଭଳି ଭାବରେ କବିସମ୍ରାଟଙ୍କ ପିତା ଉଜ୍ଜ୍ୱଳ ରଥ ଅବସ୍ଥାନ କରୁଥିଲେ ବଡ଼ଖେମୁଣ୍ଡି ଗଡ଼ଜାତରେ । ପୂର୍ବ ପୁରୁଷର ଅନେକଙ୍କ ଭଳି ଉଜ୍ଜ୍ୱଳ ରଥେ ମଧ୍ୟ ବହୁଭିନ୍ନ ଶାସ୍ତ୍ର ପୁରାଣ ଓ ସଂସ୍କୃତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ସେଥିନିମନ୍ତେ କାରଣରୁ ସେଠି ରାଜ ସଭାରେ ସେ ଅନେକ ଖ୍ୟାତି ଲାଭ କରିଥିଲେ ।

ଉଜ୍ଜ୍ୱଳରଥେ କେବଳ ଜଣେ ବ୍ରାହ୍ମଣ ପଣ୍ଡିତ ନଥିଲେ, ଥିଲେ ଜଣେ କବି । ସେ "ସଜ୍ଜନାନନ୍ଦଚମ୍ପୂ" ଓ "ରାମଚମ୍ପୂ" ନାମରେ ଦୁଇଖଣ୍ଡ କାବ୍ୟ ରଚନା କରି ତାହା ତତ୍କାଳୀନ ରାଜାଙ୍କୁ ଅର୍ପଣ କରିଥିଲେ । ସେଥିରେ ରାଜା ପ୍ରୀତ ହୋଇ ତାହାଙ୍କୁ "କବିରାଜ

ବ୍ରହ୍ମା” ଉପାଧିରେ ଭୂଷିତ କରିବା ସଙ୍ଗେସଙ୍ଗେ ସମ୍ମାନିତ ରୂପେ ମଧ୍ୟ ଗ୍ରହଣ କରିଥିଲେ । ଗଡ଼ରେ ପୁରାତନ ପଦ୍ଧତିରେ ଏକ ଚତୁଷ୍ପାଠୀ ନିର୍ମାଣ କରାଇ ତାର ଅଧ୍ୟାପନାର ଦାୟିତ୍ୱ ମଧ୍ୟ ତାଙ୍କର ଉପରେ ନ୍ୟସ୍ତ କରାଯାଇଥିଲା ।

କବିସମ୍ରାଟଙ୍କ ପିତା ଉଦ୍ଧବ ରଥେ ବିବାହ କରିଥିଲେ ଗଞ୍ଜାମର ଆଠଗଡ଼ର ପ୍ରସିଦ୍ଧ ତାନ୍ତ୍ରିକ ତ୍ରିପୁରାରି ଓଝାଙ୍କ କନ୍ୟା ଲକ୍ଷ୍ମୀ ଦେବୀଙ୍କୁ । ତ୍ରିପୁରାରି ଓଝା ଯେମିତି ପଣ୍ଡିତ ଥିଲେ ସେମିତି ତନ୍ତ୍ର ସାଧନା ମଧ୍ୟ କରିଥିଲେ । ଜାତିରେ ବ୍ରାହ୍ମଣ ଥିଲେ ପଣ୍ଡିତ ଓଝାଏ । କିନ୍ତୁ ବ୍ରାହ୍ମଣ ଜାତିର ଶ୍ରେଣୀବିଭାଗ ଅନୁଯାୟୀ ଉଦ୍ଧବ ରଥଙ୍କଠାରୁ ସେ ଥିଲେ ନିମ୍ନ ଶ୍ରେଣୀସ୍ଥ ।

ନିଜ ଗୃହରେ ଦୁର୍ଗା ମୂର୍ତ୍ତି ସ୍ଥାପନ କରି ପଣ୍ଡିତ ଓଝା ତନ୍ତ୍ର ସାଧନା କରୁଥିଲେ । ସେ ଏଭଳି ଭାବରେ ସାଧନା କରି ତନ୍ତ୍ର ବିଦ୍ୟାକୁ ନିଜ ଆୟତ୍ତାଧୀନ କରିପାରିଥିଲେ ଯେ, ତତ୍କାଳୀନ ସମାଜରେ ତାଙ୍କର କୌଣସି କଥାକୁ ଉପେକ୍ଷା କରିଦେବା ଦୂରେ ଯେ କୌଣସି ସାଧାରଣ ଲୋକ ଏକାପ୍ରକାର ଭୟ କରୁଥିଲେ କହିଲେ ଚଳେ । ତାଙ୍କର ଏକମାତ୍ର କନ୍ୟା ଥିଲା । ସେ ଇଚ୍ଛା ପୋଷଣ କରିଥିଲେ ତାଙ୍କର ଏକମାତ୍ର କନ୍ୟାକୁ ଜଣେ କୁଳୀନ ବ୍ରାହ୍ମଣ ଯୁବକ ସହିତ ବିବାହ ଦେବେ ।

ସେହି ଉଦ୍ଦେଶ୍ୟରେ ସେ ପରେ କଉଡ଼ଖେମୁଣ୍ଡି ନିବାସୀ ଧନଞ୍ଜୟ ଉଦ୍ଧବଙ୍କ ପିତାଙ୍କ ପାଖରେ ଦେଇଥିଲେ ଏବଂ ତାଙ୍କ କନ୍ୟାର ବିବାହ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ଅନ୍ୟ କୌଣସି ଉପାୟ

ନ ଦେଖି ଉଜ୍ଜ୍ୱଳ ରଥଙ୍କ କନ୍ୟା ସହିତ ବିବାହ ଲାଗି ସମ୍ମତ ହୋଇଥିଲେ ତାଙ୍କ ପିତା ଶ୍ରୀ ନିବାସ ରଥ ।

ବିବାହ କାର୍ଯ୍ୟ ଶେଷ ହୋଇଥିଲା । ପଣ୍ଡିତ ବିପ୍ରବର୍ଗ ଓତାଙ୍କ ମନସ୍କାମନା ପୂର୍ଣ୍ଣ ହୋଇଥିଲା । ନବ ବିବାହିତ ଦମ୍ପତି ବଡ଼ଦେଖମଣ୍ଡିଠାରେ ରାଜାନୁଗ୍ରହ ଲାଭକରି କାଳାତିପାତ କରୁଥିଲେ ।

ଉଜ୍ଜ୍ୱଳ ରଥଙ୍କ ପ୍ରଥମ ସନ୍ତାନ ଥିଲା ଏକ କନ୍ୟା-ସୁଲକ୍ଷଣୀ । ତାପରେ ପରେ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ମଧ୍ୟ ହୋଇଥିଲା । ତା ର ନାମକରଣ କରାଯାଇଥିଲା ହରିହର । ଉଜ୍ଜ୍ୱଳ ରଥେ ନାତି-ନାତୁଣୀ ଦେଖିବା ଉଦ୍ଦେଶ୍ୟରେ ସମୟକୁ ଅପେକ୍ଷା କରି ରହିଥିଲେ ।

ସମୟର ଗତି କିନ୍ତୁ ଖୁବ୍ ଗିଷ୍ଟ୍ରଣ । କନ୍ୟା ତାଙ୍କର ସୁଲକ୍ଷଣା ସ୍ୱାମୀହରା ହୋଇଥିଲା ଏବଂ ପୁତ୍ର ହରିହରଙ୍କ ପତ୍ନୀ ମାତ୍ର ୧୦ରବର୍ଷ ବୟସରେ ମୃତ୍ୟୁ ବରଣ କରିଥିଲେ ।

ଭଗବାନଙ୍କ ନିକଟରେ କେବଳ ଅଶ୍ରୁ ବର୍ଷଣ କରିବା ବ୍ୟତୀତ ଅନ୍ୟ କିଛି ଉପାୟ ନଥିଲା ଉଜ୍ଜ୍ୱଳ ରଥଙ୍କର । କିନ୍ତୁ ହିନ୍ଦୁମାନଙ୍କର ଦୃଢ଼ ବିଶ୍ୱାସ ଅଛି, ଭଗବାନ କୁଆଡ଼େ ଭକ୍ତର ଦୁଃଖ ହରଣ କରିଥାନ୍ତି । ତାର ଅନେକ ଉଦାହରଣ ମଧ୍ୟ ରହିଛି ପୁରାଣ ଇତିହାସରେ । ଭଗବାନ ଉଜ୍ଜ୍ୱଳ ରଥଙ୍କ ଦୁଃଖ ଶୁଣିଲେ । ବଳଦେବ ଜନ୍ମଲାଭକଲେ । ତାଙ୍କର ଇଷ୍ଟ ଦେବୀଙ୍କ ବିନ୍ଦ୍ୟ କୃପାର ପରିଣାମ ବୋଲି ମନେ କରି ଉଜ୍ଜ୍ୱଳ ରଥେ ସେଇ ନାମ ଅନୁସାରେ ପୁତ୍ରର ନାମ ରଖିଥିଲେ ବଳଦେବ ।

ସେଇ ବଳଦେବ ହିଁ ହେଲେ ଓଡ଼ିଆ ସାହିତ୍ୟର କବିସୂର୍ଯ୍ୟ ।

# ମାତୃହୀନ ବଳଦେବ

କବିସୂର୍ଯ୍ୟ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିବା ହେତୁ ସେତେବେଳର ପାରମ୍ପରିକ ରୀତି ଅନୁଯାୟୀ ସଂସ୍କୃତ ଭାଷା ଶିକ୍ଷା କରିବା ହିଁ ଥିଲା ତାଙ୍କର ବିଦ୍ୟାଶିକ୍ଷାର ଅର୍ଥ । ବ୍ରାହ୍ମଣ ଜାତି ଅନ୍ୟାନ୍ୟ ଜାତିଠାରୁ ଶ୍ରେଷ୍ଠ ବୋଲି ବିବେଚିତ ହେଉଥିଲା ତତ୍କାଳୀନ ସମାଜରେ । ତେଣୁ ରାଜା ମହାରାଜାମାନେ ବ୍ରାହ୍ମଣ ପୁରୋହିତମାନଙ୍କୁ ଯଥେଷ୍ଟ ସମ୍ମାନ ଦେବା ସଂଗେସଂଗେ ନମସ୍କାର ମଧ୍ୟ କରୁଥିଲେ । ସେମାନେ ବ୍ରାହ୍ମଣ ପଣ୍ଡିତମାନଙ୍କୁ ରାଜସଭାରେ ରଖୁଥିଲେ । ସେ ଉଦାହରଣ କେବଳ ଓଡ଼ିଶାରେ କାହିଁକି, ସମଗ୍ର ଭାରତର ଇତିହାସରେ ଅନେକ ମିଳେ । ଯେଉଁଠି ରାଜା ଥିଲେ, ପ୍ରାୟଶଃ ସେମାନେ ଗୋଟିଏ ଗୋଟିଏ ପଣ୍ଡିତ ସଭା ରଖିଥିଲେ, ସାହିତ୍ୟ, ସଂସ୍କୃତିର ଆଲୋଚନା କରିବା ସଂଗେ ସଂଗେ ଦରକାର ପଡ଼ିଲେ ସେମାନଙ୍କ ଠାରୁ ପରାମର୍ଶ ଗ୍ରହଣ କରିବା ପାଇଁ ।

କବିସୂର୍ଯ୍ୟଙ୍କ ଜନ୍ମବେଳକୁ ଓଡ଼ିଶାର ବିଦ୍ୱାନ୍ ମଣ୍ଡଳୀ ଭଞ୍ଜୀୟ ସାହିତ୍ୟର ପ୍ରଭାବରେ ଅତ୍ୟନ୍ତ ପ୍ରଭାବିତ ହୋଇ ପଡ଼ିଥିଲେ । ପ୍ରାୟ ସବୁଠି ବିଷୟର ଆଲୋଚନା ହେଉଥିଲା କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀ । କବି ସମ୍ରାଟ୍ ୧୬୯୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା ହେତୁ ତାହାଙ୍କ ରଚନାବଳୀର ପ୍ରଚାର ଆରମ୍ଭ ହୋଇଥିଲା ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗ ବେଳଠାରୁ । ବିଶେଷ କରି ଓଡ଼ିଶାର ଅନ୍ୟ ଯେ କୌଣସି ଅଞ୍ଚଳ

ଅପେକ୍ଷା ଗଞ୍ଜାମର ଦକ୍ଷିଣ ଅଂଚଳରେ ଭଞ୍ଜୀୟ ସାହିତ୍ୟ ସବୁଠାରୁ ବେଶୀ ଆଲୋଚିତ ହୋଇଥିଲା । ତାର ଏକମାତ୍ର କାରଣ ନୁହେ ଯେ, ଭଞ୍ଜ ଗଞ୍ଜାମର ଘୁମୁସର ଅଂଚଳରେ ଜନ୍ମଗ୍ରହଣ କରିଥିଲେ । ପ୍ରଧାନ କାରଣ ଥିଲା, ଓଡ଼ିଆ ଭାଷାର ପ୍ରତିଷ୍ଠା ଦିଗରେ ଓ ପୁଷ୍ଟି ସାଧନ କରିବାରେ ଗଞ୍ଜାମର ରାଜା ଓ ଜମିଦାରମାନେ ମୁଖ୍ୟତଃ ଅଗ୍ରଣୀ ଥିଲେ ।

ଇଂରେଜମାନେ ଓଡ଼ିଶା ଅଧିକାର ୧୮୦୩ ମସିହାରେ କରିଥିଲେ । ସେତେବେଳେ ଓଡ଼ିଶାର ପରିସର ଥିଲା କଟକ, ପୁରୀ ଓ ବାଲେଶ୍ବରର କେତେକ ଅଞ୍ଚଳ । ସମ୍ବଲପୁର ଥିଲା ମଧ୍ୟପ୍ରଦେଶ ଅଧୀନରେ ଓ ଗଞ୍ଜାମ କୋରାପୁଟ ଥିଲା ମାନ୍ଦ୍ରାଜ ସରକାରଙ୍କ ଶାସନାଧୀନ । ତତ୍‌କାଳୀନ ଓଡ଼ିଶା ଇଂରେଜମାନଙ୍କ ହାତକୁ ଯିବାର ଅନେକ ବର୍ଷ ପୂର୍ବରୁ ଗଞ୍ଜାମ କୋରାପୁଟ ଇଂରେଜମାନଙ୍କ ଶାସନାଧୀନ ଥିଲା । ତଥାପି ଓଡ଼ିଶାରେ ଓଡ଼ିଆ ସାହିତ୍ୟର ପୁଷ୍ଟି ସାଧନ ଦିଗରେ ଯେତିକି ଉଦ୍ୟମ କରାଯାଇଥିଲା, ତାହା ନଗଣ୍ୟ ଥିଲା । ଗଞ୍ଜାମର ରାଜା ଜମିଦାରମାନେ ହିଁ ଓଡ଼ିଆ ସାହିତ୍ୟକୁ ନୂତନ ଜୀବନ ଦେଇଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । କବିସୂର୍ଯ୍ୟ ଗ୍ରନ୍ଥାବଳୀର ଫଳକପୃଷ୍ଠ ପଣ୍ଡିତ କୃପାମଣିଦାସଙ୍କ ମତରେ "ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରୁ ଊନବିଂଶ ଶତାବ୍ଦୀର ଦ୍ଵିତୀୟ ପାଦ ମଧ୍ୟରେ ଏହି ଗଞ୍ଜାମ-ଜିଲ୍ଲାର ରାଜାମାନେ ଓଡ଼ିଆ ଭାଷାର ପୁଷ୍ଟି ଓ ପ୍ରଚାର ସମ୍ବନ୍ଧରେ ଯେପରି ଚେଷ୍ଟା କରିଅଛନ୍ତି, ତାହା ଓଡ଼ିଆ ଭାଷାର ଇତିହାସରେ ସ୍ବର୍ଣ୍ଣାକ୍ଷରରେ ଲିଖିତ ହୋଇ ରହିବା ଉଚିତ ।'

ଗଞ୍ଜାମର ଅନ୍ୟତମ କବି ଉପେନ୍ଦ୍ରଭଞ୍ଜ ଥିଲେ ଓଡ଼ିଆ କବି ତଥା ସାହିତ୍ୟିକମାନଙ୍କ ମଧ୍ୟରେ ସମ୍ରାଟ୍ । ସେହି ସମୟରେ

ବ୍ରାହ୍ମଣମାନେ ସଂସ୍କୃତକୁ ହିଁ ଅତ୍ୟଧିକ ପ୍ରାଧାନ୍ୟ ଦେଉଥିଲେ । କାରଣ ତାହା ଥିଲା ଆବଭାଷା, ଆବଭାଷାର ସମାଦର ସବୁଠି ଥିଲା । ତା ସତ୍ତ୍ୱେ ଭଞ୍ଜଙ୍କ କାବ୍ୟକବିତାଗୁଡ଼ିକୁ କୌଣସିମତେ ଉପେକ୍ଷା କରିପାରୁ ନ ଥିଲେ । ତେଣୁ ବଳଦେବଙ୍କ ପିତା ଉଜ୍ଜ୍ୱଳ ରଥେ ପୁତ୍ରଙ୍କୁ ସମସ୍ତ ଯତ୍ନ ନେଇ ଓଡ଼ିଆ ଭାଷା ଶିକ୍ଷା ଦେବାର ବ୍ୟବସ୍ଥା କରାଇଥିଲେ । ତା ସଙ୍ଗେସଙ୍ଗେ ସେ ନିଜେ ଅମରକୋଷ ଓ ସଂସ୍କୃତ ବ୍ୟାକରଣ ପଢ଼ାଉଥିଲେ । ବାଲ୍ୟ ବୟସରେ କବିସୂର୍ଯ୍ୟ ଅତ୍ୟନ୍ତ ମେଧାବୀ ଥିଲେ ବା ଅନ୍ୟ ଉତ୍ତମରୂପେ ବିଦ୍ୟାଶିକ୍ଷା କରୁ ନ ଥିଲେ । ବିଦ୍ୟାଶିକ୍ଷା ଦିଗରେ ସେ ଥିଲେ ସାଧାରଣ ।

ପାରମ୍ପରିକ ଗୀତ ଅନୁଯାୟୀ ତାଙ୍କୁ ଯେତେବେଳେ ଦଶବର୍ଷ ବୟସ ହୋଇଥିଲା, ସେତେବେଳେ ଉପନୟନ କାର୍ଯ୍ୟ ଶେଷ ହୋଇଥିଲା । ଅବ୍ରାହ୍ମଣରୁ ବ୍ରାହ୍ମଣ ହେବାର ମାତ୍ର ଛଅ ମାସ ପରେ ତାହାଙ୍କ ମାତୃଦେବୀଙ୍କ ମୃତ୍ୟୁ ହୋଇଥିଲା ।

ମାତାଙ୍କର ବିୟୋଗ ପରେ ଜଣେ ସାଧାରଣ ବାଳକର ଅବସ୍ଥା ଯାହା ହୁଏ, ତାହା ହିଁ ହୋଇଥିଲା ବଳଦେବଙ୍କର । ସେ ନିଜକୁ ଅତ୍ୟନ୍ତ ଅସହାୟ ମନେ କରୁଥିଲେ । ସେ ଅସହାୟତାର ନିରାକରଣ ଲାଗି ଶ୍ରୀ ତ୍ରିପୁରାରି ଓତା, ବଳଦେବଙ୍କ ଅଜା, ତାହାଙ୍କୁ ନିଜ ନିକଟକୁ ନେଇ ଯାଇଥିଲେ । ଆଠଗଡ଼ର ତ୍ରିପୁରାରି ଓତା ଯେପରି ଧାର୍ମିକ ଥିଲେ, ସେହିପରି ଜଣେ ପଣ୍ଡିତ ମଧ୍ୟ ଥିଲେ । ବଳଦେବ ତାଙ୍କ ଅଜାଙ୍କ ଲାଳନପାଳନରେ ବଢ଼ିବାକୁ ଲାଗିଲେ ।

ତ୍ରିପୁରାରି ଓତା ମଧ୍ୟ ବଳଦେବଙ୍କୁ ଖୁବ୍ ଭଲ ପାଉଥିଲେ; ତାର କାରଣ ଥିଲା ସେ ଥିଲେ ତାହାଙ୍କ ଅତିପ୍ରିୟ କନ୍ୟାର ପ୍ରଥମ

ଓ ଶେଷ ସନ୍ତାନ ଏବଂ ସେ ଥିଲେ ମାତୃହରା । ପୁନଶ୍ଚ ସେ ଏକ କୁଳୀନ ବ୍ରାହ୍ମଣର ବଂଶଧର । ପଣ୍ଡିତ ଓଡା କବିସୂର୍ଯ୍ୟଙ୍କ ମେଧା-ଶକ୍ତିର ପରିଚୟ ପାଇଥିଲେ ସେଇ ବାଲ୍ୟ ବୟସରୁ । ଯେତେବେଳେ କବିସୂର୍ଯ୍ୟ ତାଙ୍କ ଘରକୁ ଯାଇଥିଲେ, ସେତେବେଳକୁ ତାଙ୍କ ବୟସ ପ୍ରାୟ ଏଗାର । ତାହା ଥିଲା ବିଦ୍ୟା ଗ୍ରହଣ କରିବାର ଉପଯୁକ୍ତ ବୟସ । ତେଣୁ ତାଙ୍କ ଅଜା ପଣ୍ଡିତ ଓଡା ବଳଦେବଙ୍କୁ ସଂସ୍କୃତ କାବ୍ୟ, ଅଳଙ୍କାର, ଦର୍ଶନ ଇତ୍ୟାଦି ପଢ଼ାଇବା ଭାର ନିଜେ ଗ୍ରହଣ କରିଥିଲେ । ତାଙ୍କୁ ସଂସ୍କୃତ ଭାଷାରେ ପାରଦର୍ଶୀ କରାଇବା ଲାଗି ଅକ୍ଲାନ୍ତ ଉଦ୍ୟମ କରିଥିଲେ ସେ । ତାଙ୍କର ଧାରଣା ହୋଇଥିଲା ଯେ, ତାଙ୍କର ସମସ୍ତ ପାଣ୍ଡିତ୍ୟ ଉପଯୁକ୍ତ ଭାବରେ କବିସୂର୍ଯ୍ୟଙ୍କ ଠାରେ ପ୍ରତିବିମ୍ବିତ ହେବା ଆବଶ୍ୟକ ।

## ସ୍ୱୟଂ ଦୁର୍ଗାଙ୍କ ଦୁଗ୍ଧ ପାନ

କଥାରେ ଅଛି, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣିବ ତେଣିକି ଯାଇ । କିନ୍ତୁ ତାନ୍ତ୍ରିକ ତ୍ରିପୁରାରୀ ଓଡା ଦଇବର ସେ ଅଛିଣ୍ଡା ଦଉଡ଼ିକୁ ମଧ୍ୟ ମନ୍ତ୍ର ବଳରେ ଛିଣ୍ଡାଇ ଦେଇ ପାରୁଥିଲେ । ତାର ପ୍ରଭାବ ବଳଦେବଙ୍କ ଉପରେ ପଡ଼ିଥିଲା ।

ବଳଦେବ ବଡ଼ଖେମୁଣ୍ଡିରୁ ଯାଇ ଆଠଗଡ଼ରେ ରହିବା ପରେପରେ ସେଠାକାର ସମବୟସ୍କ ପିଲାଙ୍କ ସହିତ ନିଜକୁ ମିଶାଇ ଦେଇଥିଲେ । ଥରେ ସବୁ ସଙ୍ଗସାଥୀ ମିଳି ଏକ ଉତ୍ସବ କରିବା-ପାଇଁ ସ୍ଥିର କରିଥିଲେ । ସେମାନେ ସ୍ଥିର କରିଥିଲେ ଉକ୍ତ ଉତ୍ସବରେ କେବଳ ବସ୍ତ୍ରର ଆତସବାଜି ଫୁଟାଇବେ । ସେଥିପାଇଁ ଯୋର

ଯୋଗୁରେ ପ୍ରସ୍ତୁତ ଚାଲିଲା । ସ୍ଥିର ହୋଇଥିଲା ସନ୍ଧ୍ୟାରେ ଉତ୍ସବ ପାଳନ କରିବେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା; ଏକ ଦେଖା ଦେଲା ବିପତ୍ତି ପଡ଼ିଥିଲା । ଆକାଶ ସକାଳୁ ଅତ୍ୟନ୍ତ ପରିଷ୍କାର ଥିଲେ ମଧ୍ୟ ଅପରାହ୍ଣରେ ହଠାତ୍ ଆକାଶରେ ଦେଖା ଦେଇଥିଲା ଝଡ଼ । ଭୟଙ୍କର ବେଗରେ ପବନ ବହିଲା । କ୍ରମେକ୍ରମେ ଝଡ଼ର ବେଗ ବୃଦ୍ଧି ହେଲା ସିନା କମିଲା ନାହିଁ । ପିଲାମାନେ ସାରାଦିନ ଶୋକଶୋଷ ଭୁଲି ଉତ୍ସବ ଲାଗି ଆୟୋଜନରେ ମାତିଥିଲେ । ଝଡ଼ ଓ ପବନର ଗତିବେଗ ବୃଦ୍ଧି ପାଉଥିବା ଦେଖି ସେମାନଙ୍କ ମନ ଭିତରେ ନିରାଶାର ଛାୟା ଘୋଟିଲା । ବର୍ଷା କମ୍ଭା ଝଡ଼ ହେଲେ ତ ବାଣ ଫୁଟାଇବା ସମ୍ଭବ ନୁହେଁ; ପୁଣି ଗାଁରେ ଅସଂଖ୍ୟ ଚାଳଘର ଥିବାଯୋଗୁ ବାଣ ଫୁଟାଇବା ବିପଦଜନକ । ଚେଙ୍ଗାରୁ ନିଆଁ ଯାଇ ଘରର ଚାଳରେ ଲାଗିପାରେ ଏବଂ ସେ ପରିସ୍ଥିତିରେ ଘରପୋଡ଼ିର ସମ୍ଭାବନା ନିଶ୍ଚିତ । ସରଳମତି ବାଳକମାନେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ । ଏପରିକି ସେମାନଙ୍କ ଭିତରୁ କେତେ ମଧ୍ୟ କାନ୍ଦି ପକାଇଥିଲେ ।

ବଳଦେବଙ୍କ ଅବସ୍ଥା ବି ସେଇଆ । ବିଷାଦରେ ପରିପୂର୍ଣ୍ଣ ମୁଖମଣ୍ଡଳ । ଘରକୁ ଫେରିଲା ବେଳକୁ ଦେଖିଲେ ଅଜା ନାତିଙ୍କ ବିଷଣ୍ଣ ମୁଖ । ଅଜାଙ୍କର ମଧ୍ୟ ଦୁଃଖ ହୋଇଥିଲା । ସେ ବିଷଣ୍ଣତାର କାରଣ ଯେତେବେଳେ ହି ପ୍ରଶ୍ନ ଓ ତା ଜାଣିଲେ, ସେ ମୁହୂର୍ତ୍ତକ ପାଇଁ ନୀରବ ରହିଥିଲେ । ପ୍ରକୃତିର ଏ ପ୍ରତିକୂଳ ଆଚରଣ ଯେ ଶିଶୁମାନଙ୍କ ମନରେ କଷ୍ଟ ଦେଉଛି, ସେଥିପାଇଁ ସେ ମଧ୍ୟ ଦୁଃଖିତ ହୋଇଥିଲେ । ତା'ପରେ ସେ ପ୍ରିୟ ନାତିଙ୍କୁ ତାଙ୍କ ଜପାମାଳଟି ଆଣିବା ଲାଗି ନିର୍ଦ୍ଦେଶ ଦେଇଥିଲେ । ଉକ୍ତ ଜପାମାଳଟି ମୃତ ମଣିଷମାନଙ୍କ ଦାନ୍ତରେ ତିଆରି ହୋଇଥିଲା । ପଣ୍ଡିତ ମହୋଦୟ

ଇତ୍ୟବସରରେ ଶୁଦ୍ଧପୂତ ହୋଇ ସାରିଥିଲେ । ଜପାମାଳ ନେଇ ନିଜ ମନ୍ଦିରକୁ ଯାଉଥିଲେ ।

ସେତେବେଳକୁ ସନ୍ଧ୍ୟା ହୋଇ ଯାଇଥିଲା ପ୍ରାୟ । ବଳଦେବ ଦେଖିଲେ ବାହାରର ଝଡ଼, ବର୍ଷା, ପବନ କ୍ରମେକ୍ରମେ କମିଯାଉଥିଲା । ତା ପରେ ପରେ କିଛି ସମୟ ସେମିତି ବିତି ଯାଇଥିଲା । ବାଳକ ବଳଦେବ ଅନୁଷ୍ଠାନ କରିଥିଲେ ଯେ, ଗ୍ରାମ ଭିତରେ ଝଡ଼ ପବନର ପ୍ରଭାବ ଅତଟା ଅନୁଭୂତ ହେଉ ନଥିଲେ ମଧ୍ୟ ସେତେବେଳେ ଗ୍ରାମର ଚତୁଃପାର୍ଶ୍ଵ ଝଡ଼ ବତାସର ଦାଉ ଯେମିତି ସହ୍ୟକରି ପାରୁନଥିଲେ । ଗଛବୃକ୍ଷ ସବୁ ପବନର କ୍ଷୀପ୍ର ପ୍ରବାହ ଫଳରେ ପ୍ରାୟଶଃ ଭୂପତିତ ହେଉଥିଲେ ।

ଧ୍ୟାନଶେଷ କରି ମଣ୍ଡିତ ଉଠି ତାଙ୍କର ପୂଜା ଘରୁ ଫେରି ଦେଖିଲେ ବର୍ତ୍ତମାନ ପିଲା ତାଙ୍କର ଜନ୍ମୋତ୍ସବ ପାଳନ କରିପାରିବେ । ସେ ତାଙ୍କର ନାତିକୁ ଜନ୍ମୋତ୍ସବ ପାଳନ ଲାଗି ଆଦେଶ ଦେଇଦେଲେ । କିବସୂର୍ଯ୍ୟ ଓ ତାଙ୍କର ସହପାଠୀ ତଥା ସାଙ୍ଗମାନେ ମିଳିମିଶି ଯଥାଶୀଘ୍ର ଜନ୍ମୋତ୍ସବ ପାଳନ କରିଥିଲେ ।

ସେହି ଘଟଣାରେ ଗ୍ରାମବାସୀମାନେ ସ୍ତମ୍ଭିତ ହୋଇ ଯାଇଥିଲେ । ପିଲାମାନେ ଅତି ଆନନ୍ଦିତ ହୋଇଯାଇଥିଲେ ।

କିନ୍ତୁ ବଳଦେବଙ୍କ ମନ ଭିତରେ ସେଇ ଗୋଟିଏ ପ୍ରଶ୍ନ, ଅଜା ତାଙ୍କର ଗାଁରେ ଝଡ଼ ବତାସ ମୁହୂର୍ତ୍ତକ ମଧ୍ୟରେ ବନ୍ଦକଲେ କେମିତି ? ନାତି ସେ ପ୍ରଶ୍ନ ଅଜାଙ୍କୁ ପଚାରି ପଚାରି ଖୁଆଡ଼ିଣ ସ୍ୱାହେ ଚକିତ କରି ପକାଇଥିଲେ । ଇଚ୍ଛା କରିଥିଲେ ତାନ୍ତ୍ରିକ ବିପ୍ରବର୍ଷି ଉଠା ନାତି ବଳଦେବଙ୍କୁ ଦେଖାନ୍ତି ମନ୍ତ୍ରଟି କହିପାରିଥାନ୍ତେ । କିନ୍ତୁ

ତାଙ୍କର ବିଶ୍ୱାସ ଥିଲା ଯେ, ଯେଉଁମାନେ ତନ୍ତ୍ର ସାଧନା କରନ୍ତି, ସେମାନେ ସାଧାରଣତଃ ଅପୁତ୍ରକ ହୁଅନ୍ତି । ନିଜେ ଅପୁତ୍ରକ ରହି ନାତିକୁ ମଧ୍ୟ ଅପୁତ୍ରକ ରଖିବା ଲାଗି ସେ ଇଚ୍ଛା କରି ନଥିଲେ । ତେବେ ଏତିକି ସେ ଜଣାଇ ଦେବାକୁ ଚାହିଁଥିଲେ ଯେ, ତାଙ୍କର ଆରାଧ୍ୟା ଦେବୀ ଦୁର୍ଗା ହିଁ ପ୍ରକୃତିରେ ସମସ୍ତ ଶକ୍ତିର ଆଧାର ।

ଯେଉଁଦିନ ଗ୍ରହିଶୋଭଜନସ୍ୱରୂପ କେବଳ ଦୁଗ୍ଧପାନ କରିବା ଲାଗି ପୂର୍ବରୁ ସ୍ଥିର କରିଥିଲେ ଓଡାଏ । ଯେତିକିବେଳକୁ ଯେଉଁ ଟିଏ ବେଲରେ ଦୁଗ୍ଧ ତାଙ୍କ ନିକଟକୁ ଆସିଥି । ସେ ନାତିଙ୍କୁ ଦୁଗ୍ଧ ଦେଇ ତାହାଙ୍କୁ ବ୍ୟସ୍ତବ୍ୟସ୍ତ କରୁଥିବା ନାତିକୁ ଠାକୁର ଘରକୁ ଯାଇ ଠାକୁରଙ୍କୁ ଦୁଗ୍ଧତକ ପିଇବାକୁ କହିବା ଲାଗି ପଠାଇ ଥିଲେ । ତାହା ତାଙ୍କର ଅଜାଙ୍କର ଆଦେଶ ବୋଲି ମଧ୍ୟ ଦୁର୍ଗାଙ୍କୁ କହିବାକୁ କହିଥିଲେ ।

ବାଧ ଗୁହଟି ଭଳି ବଳଦେବ କେବଳ ଦୁଗ୍ଧ ନେଇ ଠାକୁରାଣୀଙ୍କ ମୁହଁ ନିକଟରେ ଧରି ତାହା ପିଇବା ଲାଗି ତାଙ୍କ ଅଜାଙ୍କ ଆଦେଶ ଜଣାଇ ଦେଇଥିଲେ । ସତକୁ ସତ ଗୋଟାଏ ମୁହୂର୍ତ୍ତ ଭିତରେ ପାତ୍ର ଖାଲି ହୋଇଗଲା । ସେ କଥା ଆସି ସେ ଅଜାଙ୍କୁ କହିଥିଲେ । ପୁଣି ତାଙ୍କ ଅଜା ବଳଦେବଙ୍କୁ ଆଦେଶ ଦେଇଥିଲେ ଦୁର୍ଗାଙ୍କ ନିକଟକୁ ଯିବାକୁ । ତମେ ତ ସବୁ ଦୁଗ୍ଧ ଖାଇଦେଲ ଆଉ ଅଜା ରାତିରେ କଣ ଖାଇବେ—ସେ କଥା ପଚାରିବା ଲାଗି ପରାମର୍ଶ ଦେଇଥିଲେ । ଶୂନ୍ୟପାତ୍ର ନେଇ ବଳଦେବ ଠିକ୍ ସେଇକଥା ଦୁର୍ଗାଙ୍କୁ ପଚାରିବା ପୂର୍ବରୁ ନିଜର ହସ୍ତ ସଙ୍କେତ ଦ୍ୱାରା ଦୁର୍ଗା ନିଜର ସ୍ତନ ନିକଟକୁ ପାତ୍ର ଆଣିବା ଲାଗି ନିର୍ଦ୍ଦେଶ ଦେଇଥିଲେ । ବଳଦେବ ସେଇପରି କରିଥିଲେ । ସଙ୍ଗେସଙ୍ଗେ ପାତ୍ର

ଦୁଗ୍ଧପୂର୍ଣ୍ଣ ହୋଇଗଲା । ବଳଦେବ ଖୁବ୍ ଖୁସିହୋଇ ଫେରି ଅଜାଙ୍କୁ କହିଥିଲେ, ସେ ଦୁଗ୍ଧ ଆଣିଛନ୍ତି କିନ୍ତୁ ଗାଈଦୁଧ ନୁହଁ, ତାହା ସ୍ୱୟଂ ଦୁର୍ଗାଙ୍କ ସ୍ତନ ନିଃସୃତ ।

ତ୍ରିପୁରାରୀ ଓଡ଼ା ଅତ୍ୟନ୍ତ ପ୍ରୀତ ହୋଇଥିଲେ । ନାତିଙ୍କୁ ସବୁଦିନ ଦୁଗ୍ଧ ପାନ କରିବା ଲାଗି କହୁଥିଲେ । ବଳଦେବ ସେ ଘଟଣା ପରେପରେ ମନେ କରିଥିଲେ ଯେ, ଦୁର୍ଗା ପ୍ରକୃତରେ ତାଙ୍କ ଅଜାଙ୍କର ମାତୃ ସ୍ଥାନୀୟା ଓ ମନେ କରିଥିଲେ, ଅଜା ତାଙ୍କର ଯେଉଁସବୁ ଅସାଧ୍ୟ ସାଧନ କରୁଥିଲେ, ତାହାଙ୍କ ଅପାର କୃପାରୁ ସମ୍ଭବ ହେଉଥିଲା ।

ସ୍ୱୟଂ ଦୁର୍ଗାଙ୍କ ସ୍ତନ ନିଃସୃତ ଦୁଗ୍ଧ ପାନ କରିବା ପରେ ପରେ ବଳଦେବଙ୍କ ମେଧାଶକ୍ତି ବୃଦ୍ଧି ପାଇଥିଲା । ଯାହା ଥରେ ସେ ପଢ଼ୁଥିଲେ କିମ୍ବା ଶୁଣୁଥିଲେ, ମାନସ ପଟରେ ତାହା ଲାଗି ରହୁଥିଲା । ପଣ୍ଡିତ ଓ ତାଙ୍କ ପ୍ରେରଣା ତଥା ଉଦ୍ୟମରେ ବଳଦେବ କ୍ରମେକ୍ରମେ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ ।

## ବଳଦେବ କବିସୂର୍ଯ୍ୟ ହେଲେ

ସେଇମିତି ଭାବରେ କବିସୂର୍ଯ୍ୟଙ୍କ ବାଲ୍ୟଜୀବନ ଅତିବାହିତ ହୋଇଥିଲା ଆଠଗଡ଼ରେ । ତାପରେ ନିଜ ପିତାଙ୍କସହ ବଡ଼ଖେମୁଣ୍ଡି ଚାଲିଯାଇଥିଲେ ସେ ।

ବଡ଼ଖେମୁଣ୍ଡିରେ ନିଜର ବଡ଼ଭାଇ ଓ ବିଧବା ଭଉଣୀଙ୍କ ସହ ପିତା ଉଜ୍ଜ୍ୱଳ ରଥେ ରାଜଅନୁଗ୍ରହ ପାଇ କାଳାତିପାତ

କରୁଥିଲେ । ବଡ଼ପୁଅ ହରିହରଙ୍କ ପତ୍ନୀବିୟୋଗ ଘଟିଥିବାରୁ ଓ ତାଙ୍କର ଏକମାତ୍ର କନ୍ୟା ବିଧବା ହୋଇ ଘରେ ରହୁଥିବାରୁ ନାତି ନାତୁଣୀଙ୍କୁ ଦେଖିବାର ସୌଭାଗ୍ୟ ସେତେବେଳ ଯାଏଁ ତାଙ୍କର ହୋଇ ନଥିଲା । ତେଣୁ ସେଇ ଉଦ୍ଦେଶ୍ୟରେ ସେ ଚାହିଁଥିଲେ ଯଥାଶୀଘ୍ର କନିଷ୍ଠ ପୁତ୍ର ବଳଦେବଙ୍କ ବିବାହ ।

ପୁତ୍ରପାଇଁ କନ୍ୟା ଅନ୍ୱେଷଣରେ ଉଜ୍ଜ୍ୱଳ ରଥ ପୁରୀ ଯାଇଥିଲେ । ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରତ୍ନମଣିଙ୍କ ସହ ବଳଦେବଙ୍କ ବିବାହ ସ୍ଥିରୀକୃତ ହୋଇଥିଲା ।

ମାତ୍ର ପ୍ରାୟ ୧୫ ବର୍ଷ ବୟସବେଳକୁ ବଳଦେବ ବିବାହ କରିଥିଲେ । ତଥାପି ଉଜ୍ଜ୍ୱଳ ରଥଙ୍କ କାମନା ଚରିତାର୍ଥ ହୋଇ ପାରିନଥିଲା । ପୁତ୍ରକୁ ବିବାହ କରିଦେବାର ମାତ୍ର ଆଠଟି ମାସ ପୂର୍ଣ୍ଣ ନ ହେଉଣୁ ସେ ମର ସଂସାରରୁ ବିଦାୟ ନେଇଥିଲେ ।

ଉଜ୍ଜ୍ୱଳ ରଥଙ୍କ ମୃତ୍ୟୁ ପରେ ପରେ ବଡ଼ଖେମୁଣ୍ଡି ରାଜାଙ୍କ ତରଫରୁ ମିଳୁଥିବା ସୁଯୋଗ ସୁବିଧା ସବୁ ପ୍ରତ୍ୟାହାର କରି ନିଆଯାଇଥିଲା । ପରିଣାମତଃ ସେ ପରିବାରର ମୁଖିଆ, ଜ୍ୟେଷ୍ଠ ବୟସ୍ୟଙ୍କ ବଡ଼ଭାଇ ହରିହର ଯେନତେନ ପ୍ରକାରେଣ ଗୋଟିଏ ବର୍ଷ ବିତାଇ ସେ ଅଞ୍ଚଳ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ, ପରିବାରର ଭରଣପୋଷଣର ପନ୍ଥା ଅନ୍ୱେଷଣରେ । ଗଞ୍ଜାମର ଅନ୍ୟ ଏକ ଗଡ଼ଜାତ ଜଳନ୍ତର ଚାଲି ଆସିଥିଲେ ସମସ୍ତେ ।

ସେତେବେଳେ ଜଳନ୍ତର ରାଜା ଥିଲେ ଶ୍ରୀ ରାମଚନ୍ଦ୍ର ଛୋଟରାୟ । ରାଜା ରାମଚନ୍ଦ୍ର ଛୋଟରାୟ ବୟସରେ ଅତି କମ୍ ଥିଲେ

ମଧ୍ୟ ତାଙ୍କ ପିତୃପୁରୁଷଙ୍କ ପନ୍ଥା ଅନୁସରଣ କରି ବ୍ରାହ୍ମଣ ଓ ପଣ୍ଡିତମାନଙ୍କୁ କିଛି କିଛି ଦାନଧର୍ମ କରୁଥିଲେ । ସେ ଭଞ୍ଜବଂଶୀୟ ହୋଇଥିବାରୁ କଳା ଓ ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ଗଭୀର ଅନୁରାଗ ଥିଲା । କାବ୍ୟ କବିତା ପଢ଼ିବାକୁ ଓ ଚର୍ଚ୍ଚା କରିବାକୁ ସେ ଖୁବ୍ ଆଗ୍ରହୀ ଥିଲେ । ରାଜା ରାମଚନ୍ଦ୍ରଙ୍କୁ ଦେଖା କରିବା ପରେ ପରେ ବଳଦେବଙ୍କ ଭାଇ ହରିହର ତାହାଙ୍କ ଅନୁଗ୍ରହ ଲାଭ କରିଥିଲେ । ପରିବାରଟି ଧନାକଷ୍ଟରେ ସେଠାରେ ସମସ୍ତ ଅଭାବ ଦୂର କରିବାକୁ ଲାଗିଲେ ।

ଇତି ମଧ୍ୟରେ କବିସୂର୍ଯ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ସଙ୍ଗୀତ ଓଡ଼ିଆରେ ଲେଖି ତାଙ୍କର ସାଙ୍ଗ ସାଥୀମାନଙ୍କ ଗହଣରେ ପାଠ କରୁଥିଲେ । ସେତେବେଳେ ରାଜସଭାରେ ପଣ୍ଡିତ ହେବା ଚିନ୍ତା ତାଙ୍କ ମନ ର ପ୍ରବେଶ କରି ନଥିଲା । ଯଦିଓ କବିତାଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ବା କୌଣସି ରାଜାଙ୍କୁ ସନ୍ତୁଷ୍ଟ କରିବା ଲାଗି ରଚିତ ହୋଇ ନଥିଲା, ତଥାପି ସେ ଗୁଡ଼ିକ ଖୁବ୍ ସୁନ୍ଦର, ସରଳ ଓ ସୁମଧୁର ହୋଇଥିଲା ।

କ୍ରମେକ୍ରମେ ସେ ସମ୍ବାଦ ରାଜାଙ୍କ ନିକଟରେ ପହଞ୍ଚିଲା । ରାମଚନ୍ଦ୍ର ବଳଦେବଙ୍କ ରଚିତ କବିତାଗୁଡ଼ିକ ଦେଖି ଓ ସେଥିର ଭାବ ଗାମ୍ଭୀର୍ଯ୍ୟ ହୃଦୟଙ୍ଗମ କରି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ପ୍ରତିଦିନ ରାଜଦରବାରକୁ ଆସି କବିତା ତଥା କାବ୍ୟ ଆଲୋଚନା କରିବା ଲାଗି ତାଙ୍କୁ ଅନୁରୋଧ; ବରଂ ଆଦେଶ ଦେଇଥିଲେ । ସେହି ଅବସରରେ କବିସୂର୍ଯ୍ୟ କେତେକ କବିତା ରାଜା ରାମଚନ୍ଦ୍ରଙ୍କ ନାମରେ ଭଣିତା କରି ଲେଖିଥିଲେ । ସେ ଗୁଡ଼ିକ ହିଁ କବିସୂର୍ଯ୍ୟଙ୍କ ପ୍ରାଥମିକ

ରଚନାବଳୀ । ସ୍ୱଭାବତଃ ଉକ୍ତ ପ୍ରାଥମିକ କବିତାଗୁଡ଼ିକରେ ଶବ୍ଦ-ସଂଯୋଜନ ସେତେଟା ଚମତ୍କାର ନ ଥିଲେ ମଧ୍ୟ କବିଙ୍କର ସରସ ହୃଦୟବତ୍ତା ସ୍ପଷ୍ଟ ବାରିହୋଇ ପଡ଼ୁଥିଲା । ବିଶେଷତଃ କବିସୂର୍ଯ୍ୟଙ୍କ ରଚନାଗୁଡ଼ିକ ଥିଲା ସଂଗୀତ । ରାଗ ରାଗିଣୀରେ ଭରପୂର ଥିଲା ସେଗୁଡ଼ିକ ।

ଜଳନ୍ତର ରାଜା ରାମଚନ୍ଦ୍ର ଛୋଟରାୟ କବିସୂର୍ଯ୍ୟଙ୍କ ପାଇଁ ଥିଲେ ପ୍ରଥମ ପ୍ରେରଣାଦାୟକ ଓ ଉତ୍ସାହଦାତା । ସାମୟିକ ଭାବେ ରାଜାଙ୍କର ଅନୁଗ୍ରହ ମଧ୍ୟ ପାଉଥିଲେ ବଳଦେବ । ପାଣି, ପବନ ଓ ଆବଶ୍ୟକ ପରିମାଣରେ ଉତ୍ତାପ ପାଇ ବୀଜର ଅଙ୍କୁରୋଦ୍‌ଗମ ହେଲା ପରି ରାଜାଙ୍କର ପ୍ରେରଣା ଓ ଉତ୍ସାହ କବିସୂର୍ଯ୍ୟଙ୍କୁ ସଂଗୀତ ରଚନା କରିବା କ୍ଷେତ୍ରରେ ନୂତନ ଶକ୍ତି ଯୋଗାଇ ଦେଉଥିଲା । ଅଧିକରୁ ଅଧିକ ଉତ୍ସାହିତ ହୋଇ ବଳଦେବ ରାଜା ରାମଚନ୍ଦ୍ରଙ୍କୁ ମୁଗ୍ଧ କରି ଦେଇଥିଲେ ନିଜ ରଚନାଶୈଳୀରେ ।

ବଳଦେବଙ୍କ କବିଗୁଣରେ ମୁଗ୍ଧ ହୋଇ ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟ ତାଙ୍କୁ "କବିସୂର୍ଯ୍ୟ" ଉପାଧିରେ ଭୂଷିତ କରିଥିଲେ । ସେହି ଦିନଠାରୁ ବଳଦେବ ଓଡ଼ିଶାରେ କବିସୂର୍ଯ୍ୟ ବଳଦେବ ନାମରେ ପରିଚିତ ହୋଇଗଲେ ।

# କବିସୂର୍ଯ୍ୟଙ୍କ ଚନ୍ଦ୍ରକଳା

କବିସୂର୍ଯ୍ୟ ଉପାଧି ପାଇବା ପରେପରେ ବଳଦେବ ଅଧିକ ପ୍ରେରଣା ଯେମିତି ଲାଭ କରିଥିଲେ ସାହିତ୍ୟିକ ଜୀବନର ଅଭିବୃଦ୍ଧି ପାଇଁ । ଉକ୍ତ ପଦମର୍ଯ୍ୟାଦା ଯେମିତି କୌଣସି ଗୁଣରେ କ୍ଷୁଣ୍ଣ ନ ହୁଏ, ସେଥିପାଇଁ ଅତ୍ୟଧିକ ଚେତନଶୀଳ ହୋଇଉଠିଥିଲେ ସେ ।

ବଳଦେବ ସଂସ୍କୃତ ଭାଷାକୁ ନିଜ ଅୟତ୍ତାଧୀନ କରି ସାରିଥିଲେ ସେତେବେଳକୁ । ଜଳନ୍ତରର ରାଜସଭାରେ କେବଳ ଓଡ଼ିଶା, କର୍ଣ୍ଣାଟକ, ଆନ୍ଧ୍ର ପ୍ରଦେଶର ପଣ୍ଡିତମାନେ ମଧ୍ୟ ଅନେକ ସମୟରେ ଶାସ୍ତ୍ରଚର୍ଚ୍ଚା ଲାଗି ସେଠାକୁ ଆସୁଥିଲେ । କବିସୂର୍ଯ୍ୟ ବଳଦେବ ସଂସ୍କୃତ ଭାଷାରେ କବିତା ଲେଖି ରାଜସଭାରେ ପାଠ କରୁଥିଲେ । ସେଗୁଡ଼ିକ ଭିତରେ ଅଧିକାଂଶ ଥିଲା ଆଦିରସାତ୍ମକ ।

ସେତେବେଳେ ପଣ୍ଡିତମାନଙ୍କର ଏକ ବଦ୍ଧମୂଳ ଧାରଣା ଥିଲା ଯେ, କେବଳ ସଂସ୍କୃତ ଭାଷାରେ ହିଁ ସୁନ୍ଦର କାବ୍ୟ କବିତା ଲେଖାଯାଇ ପାରିବ । ଛନ୍ଦ, ଜତିପାତ, ବିଭିନ୍ନ ଅଳଙ୍କାର ପ୍ରଭୃତି ବ୍ୟବହାର କରିବା କେବଳ ସଂସ୍କୃତ ଭାଷାରେ ହିଁ ସମ୍ଭବ । କିନ୍ତୁ ସେପରି କବିତାଗୁଡ଼ିକ ଠିକ୍ ଭାବେ ହୃଦୟଙ୍ଗମ କରିବା ପଣ୍ଡିତମାନଙ୍କ ବ୍ୟତୀତ ସାଧାରଣ ଲୋକଙ୍କ ପକ୍ଷରେ ସମ୍ଭବ ହେଉନଥିଲା । ତେଣୁ ମଝିରେ ମଝିରେ ବଳଦେବ କେତେକ କବିତା ଓଡ଼ିଆରେ ଲେଖି ରାଜସଭାରେ ପାଠକରି ସମସ୍ତଙ୍କଠାରୁ ପରମ ଆଦର ଲାଭ କରୁଥିଲେ । ବିଶେଷ କରି ଜଞ୍ଜୀପ୍ସୁ କବିତାଗୁଡ଼ିକର ଅର୍ଥ

ହୃଦୟଙ୍ଗମ କରିବା ସାଧାରଣ ପାଠକମାନଙ୍କ ପାଇଁ ଏକ କଷ୍ଟକର ବ୍ୟାପାର ହୋଇପଡ଼ୁଥିବାରୁ ସେ ସବୁକୁ ସରଳ ଭାବେ ଅର୍ଥକରି ବୁଝାଇବା ଦାୟିତ୍ୱ ବଳଦେବଙ୍କ ଉପରେ ପଡ଼ୁଥିଲା । ବରଂ ଅନ୍ୟମାନଙ୍କ ଅନୁରୋଧକୁ ଉପେକ୍ଷା କରିପାରୁ ନଥିଲେ ସେ । ପରିଣାମତଃ ବାରମ୍ବାର ଏବଂ ଗମ୍ଭୀରଭାବେ ଉକ୍ତ ସାହିତ୍ୟ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ତାହାର ସରଳ ବ୍ୟାଖ୍ୟା କରିବାକୁ ପଡ଼ୁଥିବା ହେତୁ ଉକ୍ତ କବିତାର ଦୋଷଗୁଣଗୁଡ଼ିକ ସମ୍ପର୍କରେ ସେ ଅବଗତ ଥିଲେ । ତେଣୁ ନିଜେ କବିତା ଲେଖିଲାବେଳେ ସେ ସବୁ କପଟ ଦୂର କରିବା ଚେଷ୍ଟାରେ, ସେଥିପ୍ରତି ସତର୍କ ରହିବା ସ୍ୱାଭାବିକ । ସେଥି ମଧ୍ୟରୁ ଅନେକ କବିତା ଜଳନ୍ତର ରାଜାଙ୍କ ନାମରେ ଭଣିତା କରୁଥିଲେ ଓ କେତେକ ନିଜ ନାମରେ ମଧ୍ୟ ।

କ୍ରମେକ୍ରମେ କବିସୂର୍ଯ୍ୟ ରାଜା ରାମଚନ୍ଦ୍ରଙ୍କ ବିଶ୍ୱାସଭାଜନ ହୋଇ ଉଠିଥିଲେ ଏବଂ ଶାସନ କାର୍ଯ୍ୟରେ ମଧ୍ୟ ସାହାଯ୍ୟ କରିବା ପାଇଁ ରାଜାଙ୍କ ଅନୁରୋଧକୁ ଉପେକ୍ଷା କରିବା ସମ୍ଭବପର ମନେକରି ନ ଥିଲେ । ବଳଦେବଙ୍କ ସାହଚର୍ଯ୍ୟ ରାଜା ରାମଚନ୍ଦ୍ରଙ୍କୁ ଆନନ୍ଦ ଦେଉଥିଲା ସବୁବେଳେ ।

ଥରେ ରାଜା ତାଙ୍କ ପିତୃବ୍ୟଙ୍କ ଘରକୁ ଯାଇଥିଲେ ବଳଦେବଙ୍କୁ ସାଙ୍ଗରେ ନେଇ । ସେଠାରେ ପ୍ରାୟ ପାଞ୍ଚ ବର୍ଷର ଗୋଟିଏ କଣେଶା କନ୍ୟାକୁ ଦେଖିଥିଲେ । ତାର କଳିଲ କଳିଲ ଅଙ୍ଗସୌଷ୍ଠବ ରାମଚନ୍ଦ୍ରଙ୍କୁ ଆକୃଷ୍ଟ କରିଥିଲା । ସେ ଉକ୍ତ ବାଳିକାର ପରିଚୟ ଜାଣିବାକୁ ଚାହିଁଥିଲେ । ତାର ଇତିହାସ ଶୁଣି ସେ ପ୍ରଥମେ ଟିକିଏ ଦୟାର୍ଦ୍ର ହୋଇଉଠିଥିଲେ । ବାଳିକାଟି ଉଚ୍ଚ କରଣ କୁଳରେ ଜନ୍ମଲାଭ କରିଥିଲେ ମଧ୍ୟ ପିତା ଓ ମାତାଙ୍କୁ ହରାଇ

ସାରଥିଲା । ରାଜପ୍ରାସାଦ ଭିତରେ ସେ ବୁଲିବାର ଉଦ୍ଦେଶ୍ୟ ଥିଲା କିଛି ସାହାଯ୍ୟ ପାଇବା । ସେ ଇତିହାସ ଶୁଣି ଓ ବାଳିକାଟିର ସୌନ୍ଦର୍ଯ୍ୟ ଦେଖି ତାଙ୍କ ନିଜ ରାଜ ଅନ୍ତଃପୁରରେ ତାର ପାଳନ ପୋଷଣ ପାଇଁ ଆଦେଶ ଦେଇଥିଲେ ରାଜା ରାମଚନ୍ଦ୍ର ।

ବାଟମାଅଣ୍ଟେଶ୍ୱର କରଣ କନ୍ୟା ଚନ୍ଦ୍ରକଳା ରାଜା ରାମଚନ୍ଦ୍ରଙ୍କ ଉଆସରେ ରାଜକନ୍ୟା ଭଳି ପ୍ରତିପାଳିତ ହେବାକୁ ଲାଗିଲା ।

ରାଜା ରାମଚନ୍ଦ୍ର ଅନୁରୋଧ କରିଥିଲେ କବିସୂର୍ଯ୍ୟ ବଳଦେବଙ୍କୁ, ଠିକ୍ ଭଞ୍ଜଙ୍କର ଲାବଣ୍ୟବତୀ ଢଙ୍ଗରେ ଏକ କାବ୍ୟ ରଚନା କରିବାଲାଗି । ବଳଦେବ ମଧ୍ୟ ସେଥିପାଇଁ ନିଜର ଆଗ୍ରହ ପ୍ରକାଶ କରିଥିଲେ ।

କଥ ରେ ଅଛି କବିତା ବନିତା ଲତା ନ ବର୍ତ୍ତନ୍ତ ନିରାଶ୍ରୟେ । କବିସମ୍ରାଟ୍ ଯେମିତି ଲାବଣ୍ୟବତୀ କାବ୍ୟ ରଚନା ଲାଗି ବିଷୟ ବସ୍ତୁର ଏକ ସୁନ୍ଦର ପରିକଳ୍ପନା କରିଥିଲେ, ସେଇମିତି ଚନ୍ଦ୍ରକଳା ର ଜନ୍ମବୃତ୍ତାନ୍ତ ବର୍ଣ୍ଣନା କରିବ ପାଇଁ କବିସୂର୍ଯ୍ୟ ଏକ ସୁନ୍ଦର ପରିକଳ୍ପନା କରିଥିଲେ । ଉପେନ୍ଦ୍ର ଭଞ୍ଜ ଯେପରି ଲାବଣ୍ୟବତୀ କାବ୍ୟ ଆରମ୍ଭ କରିବା ପୂର୍ବରୁ ତାଙ୍କର ଇଷ୍ଟଦେବୀଙ୍କୁ ସ୍ମରଣ କରିଥିଲେ, ସେହିପରି ତାଙ୍କର ଇଷ୍ଟଦେବୀଙ୍କୁ ସ୍ମରଣ କରିପାରିଥାନ୍ତେ କବି ବଳଦେବ । କିନ୍ତୁ ଜାଣିଥିବାପରି କବି ଓଡ଼ିଶାର ପରମ ଆରାଧ୍ୟ ଦେବତା ଜଗନ୍ନାଥଙ୍କ ସ୍ତବ ଆରମ୍ଭ କରିଥିଲେ ଚନ୍ଦ୍ରକଳା କାବ୍ୟରେ । ସମ୍ପୂର୍ଣ୍ଣ ରୂପେ ପ୍ରଥମ ଅଧ୍ୟାୟଟି କେବଳ ଜଗନ୍ନାଥ ମନ୍ଦିରର ବେଢ଼ା, ବିଭିନ୍ନ ଦେବଦେବୀ ବର୍ଣ୍ଣନାରେ ରସ ଶିକ୍ତ । ପ୍ରକୃତରେ ଦୀର୍ଘ ଛନ୍ଦରୁ ର୍ବି

ଚନ୍ଦ୍ରକଳା କାବ୍ୟ ଆରମ୍ଭ କରିଥିଲେ ତଲେ । ସେଥିରେ ଲାବଣ୍ୟବତୀ କାବ୍ୟର କ୍ରମକୁ ଯେପରି ଅନୁକରଣ କରାଯାଇଛି । ଚନ୍ଦ୍ରକଳାର ଜନ୍ମବୃତ୍ତାନ୍ତ, ପୂର୍ବ ଜନ୍ମର କାହାଣୀ ସମେତ ବାଲ୍ୟଲୀଳା, ଉଦ୍ୟାନ ବିହାର, ଜଳକେଳି, ବେଶ ବିନ୍ୟାସ, ଯୌବନାବସ୍ଥା, ଚଉଷଠି ଲକ୍ଷଣ ଓ ତାର ଉତ୍ତର ପାଠ, ସ୍ୱପ୍ନଦର୍ଶନ ପ୍ରଭୃତି ଚମତ୍କାର ସାବଲୀଳ ଭାଷାରେ ବର୍ଣ୍ଣନା କରାଯାଇଛି । ସେହି ସମୟରେ ପ୍ରାପ୍ତ ଲାବଣ୍ୟବତୀ କାବ୍ୟ ରଚିତ ହୋଇଥିଲା । ତେଣୁ କାବ୍ୟର ପର୍ଯ୍ୟାୟକ୍ରମ ବର୍ଣ୍ଣନା ବଳଦେବ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବରେ କରିଥିଲେ ବୋଲି ନିଃସନ୍ଦେହରେ କୁହାଯାଇ ପାରେ । ବିଶେଷ ଭାବେ ଅଳଙ୍କାର ପ୍ରୟୋଗ କରିବା ଓ ଯଥାଯଥ ଭାବରେ ସୁନ୍ଦର ଶବ୍ଦ ପ୍ରୟୋଗ କରିବାରେ ସେ ଥିଲେ ସିଦ୍ଧହସ୍ତ । ରଚନାଶୈଳୀରେ ସତେ ଯେମିତି ଏକ ପାଦୁକାଙ୍କର ସ୍ପର୍ଶ ଲାଗିଥିଲା ।

କେବଳ ଚନ୍ଦ୍ରକଳା କାହିଁକି ତାହାଙ୍କର କୌଣସି ରଚନା ଭଞ୍ଜୀୟ କାବ୍ୟ କବିତା ଭଳି ସେତେଟା ଦୁର୍ବୋଧ ନ ଥିଲା । ବଳଦେବ ସରଳ ସୁମଧୁର ରଚନାର ପକ୍ଷପାତୀ ଥିଲେ । ଯାହାର ଅର୍ଥ ନୁହେଁ, ସେ କୌଣସି କ୍ଲିଷ୍ଟ ତଥା ସଂସ୍କୃତ ଶବ୍ଦାବଳୀର ପ୍ରୟୋଗ କରି ନଥିଲେ । ଯେଉଁ ଯେଉଁ ସ୍ଥାନମାନଙ୍କରେ ସେଭଳି ସଂସ୍କୃତ ଶବ୍ଦାବଳୀର ପ୍ରୟୋଗ କରାଯାଇଥିଲା, ପ୍ରକୃତରେ ସେ ଗୁଡ଼ିକ ରଚନାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥିଲା ସିନା, କୌଣସିଠାରେ ତାର ମର୍ଯ୍ୟାଦା ହାନୀ କରିନଥିଲା ।

ଚନ୍ଦ୍ରକଳା କାବ୍ୟରେ ଅଳଙ୍କାର ବିନ୍ୟାସ ଥିଲା ଅତି ଚମତ୍କାର । ବଳଦେବ ଚନ୍ଦ୍ରକଳାର ଛାନ୍ଦଗୁଡ଼ିକୁ ନିଜ ନାମରେ ଭଣିତା କରି ନଥିଲେ । କରିଥିଲେ ଜଳନ୍ତରର ରାଜା ରାମଚନ୍ଦ୍ରଙ୍କ

ଧାମରେ । କାରଣ ପଦଓ୍ଵ କାବ୍ୟର ସ୍ରଷ୍ଟା ବଳଦେବ ଥିଲେ, ତଥାପି ସେଭଳି ଏକ କାବ୍ୟ ଲେଖିବା ସମ୍ଭବ ହୋଇଥିଲା କେବଳ ଜଳନ୍ତର ରାଜାଙ୍କ ଯୋଗୁଁ । ପ୍ରତ୍ୟେକ ଛାନ୍ଦ ରଚନା କରିବା ପରେ ପରେ ତାହା ନେଇ ସେ ରାଜସଭାରେ ପାଠ କରୁଥିଲେ । ତାଙ୍କ ରଚନା ଶୈଳୀ ତଥା ଭାବପରିକଳ୍ପନା ଏତେ ସୁନ୍ଦର ହୋଇଥିଲା ଯେ, ଶ୍ରୋତାମାନେ ମୁଗଧ ହୋଇ ସତେ କି ଖଣ୍ଡିଏ ଖଣ୍ଡିଏ ପାଷାଣ ପ୍ରତିମା ପାଲଟି ଯାଉଥିଲେ ।

ଅନ୍ୟପକ୍ଷରେ ରାଜଅନ୍ତଃପୁରରେ ଚନ୍ଦ୍ରକଳାର ବୃଦ୍ଧି ସଙ୍ଗେସଙ୍ଗେ ବଳଦେବଙ୍କ ମାନସସନ୍ତାନର କଳେବର ମଧ୍ୟ ବୃଦ୍ଧି ପାଉଥିଲା । ରାଜକୁମାରୀ ଭୂଳ୍ୟ ଚନ୍ଦ୍ରକଳାର ବିବାହ ଲାଗି ଆୟୋଜନ ମଧ୍ୟ କରାଯାଇଥିଲା ।

କିନ୍ତୁ ନିୟତିର ଗତି ବିଚିତ୍ର । ହଠାତ୍ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଚନ୍ଦ୍ରକଳା ସମସ୍ତଙ୍କୁ ଗଭୀର ଶୋକସାଗରରେ ଭସାଇ ଦେଇ ସ୍ଵର୍ଗକୁ ଅପର ପୁରକୁ । ରାଜା ତଥା ତାଙ୍କ ପରିବାର ସମସ୍ତେ ଶୋକବିହ୍ଵଳିତ ହୋଇ ଉଠିଥିଲେ । କେବଳ ସେତିକି ନୁହେଁ, ବଳଦେବଙ୍କ ମାନସସନ୍ତାନ ଚନ୍ଦ୍ରକଳାର ବୃଦ୍ଧି ମଧ୍ୟ ଅତି ଅକସ୍ମାତ୍ ଭାବରେ ବ୍ୟାହତ ହୋଇଥିଲା । ବିନା ଆଶ୍ରୟରେ କବିତା ବଂଚିବ କେମିତି ? ଚନ୍ଦ୍ରକଳାର ମୃତ୍ୟୁ ପରେ ବଳଦେବ ସେ ଅସମ୍ପୂର୍ଣ୍ଣ କାବ୍ୟ ସମ୍ପୂର୍ଣ୍ଣ କରିବା ଲାଗି ଆଉ ମନୋନିବେଶ କରି ନ ଥିଲେ । ସେତେବେଳ ପର୍ଯ୍ୟନ୍ତ ମାତ୍ର ତଉଦଟି ଛାନ୍ଦ ରଚନା କରାଯାଇଥିଲା । ରାଜା, ପାରିଷଦବର୍ଗ ଓ ସେ କାବ୍ୟର ଶ୍ରୋତାମଣ୍ଡଳୀଙ୍କ ଅନୁରୋଧକ୍ରମେ ବଳଦେବ ଆଉ ପାଞ୍ଚଟି ଛାନ୍ଦ ରଚନା କରିଥିଲେ ।

ତଥାପି ସେଥିରେ ପୂର୍ଣ୍ଣତା ଆସିପାରି ନ ଥିଲା ।

# ଶାସନର ଦଣ୍ଡ କାନ୍ଧ ଉପରେ

ଏମେନ୍ତେ ବଳଦେବ ଜଳନ୍ତରର ରାଜା ରାମଚନ୍ଦ୍ରଙ୍କ ପ୍ରିୟ ପାତ୍ର ହେବାରେ ଲାଗିଲେ ଏବଂ ଅତି ଅଳ୍ପ ସମୟ ମଧ୍ୟରେ ସେ ଅତି ଆସ୍ଥାବାନ୍ ବ୍ୟକ୍ତି ରୂପରେ ପ୍ରତିଷ୍ଠିତ ହୋଇପାରିଥିଲେ । ଏଣେ କବି ହିସାବରେ ଜନଗଣଙ୍କ ହୃଦୟରେ ତଥା ପାରିଷଦଙ୍କ ହୃଦୟରେ ଆସନ ପକାଇ ନେଇଥିଲେ, ରାଜ୍ୟ ଶାସନ କ୍ଷେତ୍ରରେ ରାଜା ତାହାଙ୍କ ସାହାଯ୍ୟ କାମନା କରିଥିଲେ ସମୟେ ସମୟେ ।

ସେହିଭଳି ଭାବରେ କିଛିଦିନ ବିତିଯିବା ପରେ ରାଜା ବଳଦେବଙ୍କୁ ତାଙ୍କର ଦେବାନ୍ ନିଯୁକ୍ତ କରିଥିଲେ ।

ତେବେ ଚନ୍ଦ୍ରକଳାର ମୃତ୍ୟୁ ପରେପରେ ରାଜା ଏତେ ମର୍ମାହତ ହୋଇ ପଡ଼ିଥିଲେ ଯେ, କେବଳ ତାର କଥା ବ୍ୟତୀତ ଅନ୍ୟ କୌଣସି ଚିନ୍ତା ତାହାଙ୍କ ମସ୍ତିଷ୍କରେ ପଶୁ ନ ଥିଲା । ସେ ଏତେ ବ୍ୟଥିତ ହୋଇ ପଡ଼ିଥିଲେ ଯେ ନିଜର ଅସାମର୍ଥ୍ୟ ପ୍ରକାଶ କରି ରାଜ୍ୟର ସମସ୍ତ ଶାସନ ଭାର ବଳଦେବଙ୍କ ଉପରେ ଅର୍ପଣ କରି ଦେଇଥିଲେ । ପ୍ରତିଦିନ ସନ୍ଧ୍ୟାରେ ରାଜା ନିଜର ପାରିଷଦଙ୍କ ସହ କେବଳ ଚନ୍ଦ୍ରକଳାର ଅତୀତ କାର୍ଯ୍ୟକଳାପ ଆଲୋଚନା କରି ସାନ୍ତ୍ୱନା ଲାଭ କରୁଥିଲେ ।

ଏଣେ ବଳଦେବ ରାଜ୍ୟର ପରିଚାଳନା କରିବାରେ ଅଧିକ ସମୟ ବ୍ୟୟିତ କରିବାକୁ ବାଧ୍ୟ ହେଉଥିଲେ । ଯେଉଁ ବଳକା ସମୟ ପାଉଥିଲେ, ସେଥିରେ ଯାହା ରଚନା କରୁଥିଲେ ତାହା ମଧ୍ୟ

ରାଜାଙ୍କୁ କୌଣସି ସାନ୍ତ୍ୱନା ଦେଇପାରୁ ନ ଥିଲା । ବଳଦେବ ଲକ୍ଷ୍ୟ କରିଥିଲେ ବଡ଼ ବଡ଼ ଲେଖା; ଯଥା କାବ୍ୟ ପ୍ରବନ୍ଧ ଇତ୍ୟାଦି ସେ ସମୟରେ ରାଜାଙ୍କୁ ସାନ୍ତ୍ୱନା ଦେଇ ପାରିବା ଅବସ୍ଥାରେ ନ ଥିଲା । ତେଣୁ ସେ ପରିକଳ୍ପନା କରିଥିଲେ ଛୋଟ ଛୋଟ ସରସ ସଙ୍ଗୀତ ଅମ୍ବା ଚଉପଦୀ ରଚନା କରିବେ । ଏଣେ ତାଙ୍କର ନିଜର ବି ସମୟ କମ୍ ଥିବାରୁ ତାହା ରଚନା କରିବା ଲାଗି ତାହାଙ୍କ ପାଇଁ ମଧ୍ୟ ସୁବିଧା ହେବ ।

ସେହି ପରିସ୍ଥିତିରେ ବଳଦେବ ସଙ୍ଗୀତ ରଚନା କରିବା ଆରମ୍ଭ କରିଥିଲେ । ସେତେବେଳେ ସେ ଯେଉଁସବୁ ସଙ୍ଗୀତ ଲେଖିଥିଲେ, ସେ ସବୁ ପ୍ରାୟ ଜଗନ୍ନାଥ ଅଧିପତି ଅମ୍ବା ରାଜା ରାମଚନ୍ଦ୍ରଙ୍କ ନାମରେ ଭଣିତ କରିଥିଲେ । ପ୍ରାୟ ପ୍ରତିଦିନ ରସପିପାସୁ ରାଜାଙ୍କୁ ସଙ୍ଗୀତ ଅମ୍ବା ଚଉପଦୀ ଶୁଣାଉଥିଲେ ବଳଦେବ । ପ୍ରକୃତରେ କାରୁଣ୍ୟ ଗ୍ରାସ କରିଥିବା ରାଜା କ୍ରମେକ୍ରମେ ପ୍ରକୃତିସ୍ଥ ହୋଇଥିଲେ ।

ବଳଦେବଙ୍କ ଉପରେ ରାଜା ରାମଚନ୍ଦ୍ରଙ୍କ ବିଶ୍ୱାସ ବାସ୍ତବରେ ଭଳି ସମାଭୂତ ହୋଇଥିଲା । ସେତେବେଳେ ରାଜ୍ୟର କ୍ଷେତ୍ର ଶାସନଭାର ତାଙ୍କ ଉପରେ ଋଣ୍ଡଥିଲା କହିଲେ ଚଳେ । ଫଳତଃ ରାଜ୍ୟର ଯାବତୀୟ ଆୟବ୍ୟୟର ଭାର ମଧ୍ୟ ବଳଦେବଙ୍କ ହାତରେ ନ୍ୟସ୍ତ କରାଯାଇଥିଲା ।

ରାଜ୍ୟର ସମସ୍ତ ପରିଚାଳନା ନିଜେ ନିର୍ବାହ କରୁଥିଲେ ସୁଦ୍ଧା ବଳଦେବଙ୍କ ମନରେ ତିଳେମାତ୍ର ଗର୍ବ ଅମ୍ବା ଅହଙ୍କାର ନ ଥିଲା । ନିଜର ପାରିଶ୍ରମିକ ସ୍ୱରୂପ ସେ ଯେତେ ଇଚ୍ଛା କରିଥାନ୍ତେ ସେତିକ ନେଇ ପାରିଥାନ୍ତେ; କିନ୍ତୁ ଜଣେ ବ୍ରାହ୍ମଣର ନିଷ୍ଠା ନେଇ,

ଅନ୍ୟ କୌଣସି ପ୍ରକାର ବେଶ ପୋଷାକର ପରିବର୍ତ୍ତନ ସେ ଇଚ୍ଛା କରି ନଥିଲେ କିମ୍ବା ନିଜର ଜିହ୍ୱାଲାଳସା ଚରିତାର୍ଥ କରିବା ପାଇଁ ସେ ଇଚ୍ଛା କରି ନଥିଲେ । ଭବିଷ୍ୟତ ପାଇଁ ସଂଚୟ କରି ରଖିବା କାମନା ବି ତାଙ୍କର ନ ଥିଲା । ନିଜର ବ୍ୟକ୍ତିଗତ ସ୍ୱାର୍ଥପାଇଁ ସେ ତାଙ୍କ କ୍ଷମତାର କୌଣସିକାଳେ ଅପବ୍ୟବହାର କରିନଥିଲେ ।

ଅନ୍ୟ ପକ୍ଷରେ ଯେତେବେଳେ ରାଜ୍ୟର ସମସ୍ତ ଦାୟିତ୍ୱ ତାହାଙ୍କୁ ବହନ କରିବାକୁ ପଡ଼ିଥିଲା, ବଳଦେବ ଜନଗଣଙ୍କ ସାଧାରଣ ସ୍ୱାର୍ଥ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ । ଦେଶର ସାମାଜିକ ଜୀବନର ମାନ ବୃଦ୍ଧି କରିବାକୁ ହେଲେ ଦେଶର ଅର୍ଥନୈତିକ ପ୍ରଗତି ଯେ ଆବଶ୍ୟକ, ତାହା ଅନୁଭବ କରି କୃଷି କାର୍ଯ୍ୟର ସହାୟତା କରିବା ଭଳି ସହାୟ ଅନେକଗୁଡ଼ିଏ ପୋଖରୀ ଖୋଳାଇଥିଲେ । ରାଜାଙ୍କ ଅନୁମୋଦନକ୍ରମେ ଅନେକଗୁଡ଼ିଏ କୃଷିଋଣ ମଧ୍ୟ ରାଜକୋଷରୁ ପ୍ରଦାନ କରାଇବା ବ୍ୟବସ୍ଥା କରିଥିଲେ । ଫଳରେ ଅନେକ ଗରିବ କୃଷୀ ଉପକୃତ ହୋଇଥିଲେ ।

ଜଳନ୍ତର ରାଜ୍ୟର ବିଭିନ୍ନ ସ୍ଥାନରେ ଅନେକ ଗୁଡ଼ିଏ ଦେବମନ୍ଦିର ଥିଲା । ଉପଯୁକ୍ତ ପରିଚାଳନାର ଅଭାବରେ ରାଜଦତ୍ତ ଜମିଜମା ଗୁଡ଼ିକ ବ୍ୟକ୍ତିଗତ ମାଲିକାନାରେ ପରିଣତ ହୋଇ ଯାଇଥିଲା କହୁଥିଲେ ତକେ । ଅତିଥି ଅଭ୍ୟାଗତ ତଥା ମନ୍ଦିରର ଭୋଗରାଗ ପାଇଁ ସବୁ ଉଦ୍ଦିଷ୍ଟ ଥିଲେ ସୁଦ୍ଧା ତାହା ସେହି ଉଦ୍ଦେଶ୍ୟରେ ବ୍ୟବହୃତ ହେଉ ନଥିଲା । ସେଥିଲାଗି ମଠ ଓ ମନ୍ଦିର-ଗୁଡ଼ିକର ସୁ ପରିଚାଳନା କରି ମହନ୍ତମାନଙ୍କୁ ରାଜ୍ୟର ରାଜ-ଧର୍ମକୁ ଉଚିତ ନିଜର ମନୋଭାବ ପ୍ରକାଶ କରିଥିଲେ ବଳଦେବ । କେବଳ ସେତିକି ନୁହେଁ, ପରେ ପରେ ସେ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ

ପ୍ରକୃତରେ ସେଗୁଡ଼ିକ ଉପଯୁକ୍ତ ଚନ୍ଦଯୋଗ ହେଉଥିଲା କି ନାହିଁ। ଫଳତଃ ସମଗ୍ର ରାଜ୍ୟରେ ଥିବା ମନ୍ଦିରଗୁଡ଼ିକର ପରିଚାଳନା ଚମତ୍କାର ଭାବରେ ବଦଳିଯାଇ ଫଳପ୍ରଦ ହୋଇଥିଲା।

ପ୍ରଜା ମାନଙ୍କର ସୁବିଧା ଦୃଷ୍ଟିରୁ ଜଳନ୍ତର ରାଜ୍ୟର ପ୍ରାଚୀନ ଗଡ଼କୁ ସେଠାରୁ ସୋମପେଣ୍ଠ ନିକଟବର୍ତ୍ତୀ ଦୁର୍ଗାପ୍ରସାଦ ନାମକ ସ୍ଥାନକୁ ଉଠାଇ ନେଇଥିଲେ।

ତାଙ୍କ ଭିତରେ ସାହିତ୍ୟିକ ବଳଦେବଙ୍କ ସାଂସ୍କୃତିକ ଚେତନା, ଜାତୀୟତାବାଦୀ ଚିନ୍ତାଧାରା କୌଣସି କାଳେ ସୁପ୍ତ ନଥିଲା। ଜଳନ୍ତର ରାଜ୍ୟ ଥିଲା ଆନ୍ଧ୍ର ଓ ଓଡ଼ିଶାର ସୀମାନ୍ତ ଅଞ୍ଚଳ; ତେଣୁ ଆନ୍ଧ୍ର ସଂସ୍କୃତି, ଆଚାର ବ୍ୟବହାର, ସେଠିକା ଲୋକଙ୍କ ଜୀବନଧାରଣ ପଦ୍ଧତି ଅନ୍ୟ ଉପରେ ପଡ଼ିବା ସ୍ୱାଭାବିକ। ବଳଦେବ ଅନୁଭବ କରିଥିଲେ, ସେହି ଅଞ୍ଚଳର ଓଡ଼ିଆମାନେ ଆନ୍ଧ୍ର ଅଞ୍ଚଳ ଲୋକଙ୍କ ସଂସ୍ପର୍ଶରେ ଆସି ନିଜର ପୁରାତନ ସାଂସ୍କୃତିକ ପରମ୍ପରା ଭୁଲି ଯାଉଛନ୍ତି। ସେମାନଙ୍କ କାର୍ଯ୍ୟକଳାପରେ ଅଧିକାଂଶ ସ୍ଥଳରେ ତେଲଗୁ ଲୋକଙ୍କ ଜୀବନ ଧାରଣର ଧାରା ପ୍ରତିଫଳିତ ହେଉଛି। ତେଣୁ ସେ ସବୁକୁ ବଦଳାଇବାକୁ ଏବଂ ନିଜର ପୁରାତନ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ସେ ଉତ୍କଳାଶ୍ରମ ନାମକ ଏକ ଅନୁଷ୍ଠାନ ଗଠନ କରିଥିଲେ। ସ୍ୱୟଂ ରାଜା ଥିଲେ ତାହାର ସଭାପତି। କ୍ରମେକ୍ରମେ ରାଜ୍ୟର ଶିକ୍ଷିତ ସମ୍ପ୍ରଦାୟ ସେ ଅନୁଷ୍ଠାନ ସହିତ ନିଜକୁ ମିଳାଇ ଦେଉଥିଲେ। ଜନ ସାଧାରଣ ମଧ୍ୟ ଉକ୍ତ ସଙ୍ଘର କାର୍ଯ୍ୟକଳାପ ଦେଇ କ୍ରମେକ୍ରମେ ସନ୍ତୋଷ ଲାଭ କରୁଥିଲେ। ଅନେକ ସମୟରେ ରାଜ୍ୟ ଶାସନ ସମ୍ବନ୍ଧୀୟ କେତେକ ଜଟିଳ ସମସ୍ୟାର ସମାଧାନ ସେହି ସଭାରେ ହିଁ କରାଯାଉଥିଲା ଓ ପରିଣାମତଃ ପ୍ରଜାମଣ୍ଡଳୀ ଖୁସି ହେଉଥିଲେ।

ବଳଦେବ ସେ ରାଜ୍ୟର ଜନଗଣଙ୍କ ହୃଦୟରେ ଏକ ଶାନ୍ତ ସୁନ୍ଦର ଆସନରେ ଅଧିଷ୍ଠିତ ହୋଇ ପାରିଥିଲେ ସେଇଥି ପାଇଁ । ତାଙ୍କର ଖ୍ୟାତି ଓ ପ୍ରତିପତ୍ତି ମଦନରେ ବିସ୍ତୃତ ହୋଇଥିଲା ଯେମିତି । ପଡ଼ୋଶୀ ରାଜନ୍ୟମଣ୍ଡଳୀ ମଧ୍ୟ ତାଙ୍କର ପ୍ରତିଭା ପ୍ରତି ସମ୍ମାନ ଜଣାଉଥିଲେ । ସେଥିପାଇଁ ଜଳନ୍ତରର ଏକ ପଡ଼ୋଶୀ ରାଜ୍ୟ ମଞ୍ଜୁଷା ସହ, ଅନେକ ଦିନରୁ ଥିବା କନ୍ଦଳର ସମାଧାନ ସମ୍ଭବ ହୋଇଥିଲା । ନିଜେ ମଧ୍ୟସ୍ଥରୂପେ ମଞ୍ଜୁଷା ରାଜଦରବାରକୁ ଯାଇ ସେମାନଙ୍କୁ ଜଳନ୍ତର ରାଜ ପରିବାର ସହ ଚିରକାଳ ପାଇଁ ବନ୍ଧୁତାର ରଜ୍ଜୁରେ ବାନ୍ଧି ଦେଇଥିଲେ ।

ସଂସ୍କୃତ ଭାଷା ଓ ସାହିତ୍ୟର ଉନ୍ନତି କରିବା ପାଇଁ ପ୍ରାୟ ପ୍ରତ୍ୟେକ ରାଜ ଦରବାରରେ ଗୋଟିଏ ଗୋଟିଏ ପଣ୍ଡିତସଭା ଥିଲା ଏବଂ ବିଭିନ୍ନ ରାଜ୍ୟରୁ ପଣ୍ଡିତମାନେ ଆସି ସେଠାରେ ସାହିତ୍ୟ ଚର୍ଚ୍ଚା କରୁଥିଲେ । ରାଜା ସବୁଠାରେ ରହୁଥିଲେ ପୃଷ୍ଠପୋଷକ । ଏପରିକି ଅନେକ ସ୍ଥାନରେ ଅନେକ ପଣ୍ଡିତଙ୍କ ଶାସ୍ତ୍ରୀୟ ବିବାଦର ଚର୍ଚ୍ଚା ହିଁ ଥିଲା ସେଇଯା । ଜଳନ୍ତରରେ ମଧ୍ୟ ସେହିଭଳି ଗୋଟିଏ ପଣ୍ଡିତ ସଭା ଥିଲା । ରାଜା ରାମଚନ୍ଦ୍ରଙ୍କ ସଂସ୍କୃତ ପ୍ରତି ଟିକିଏ ଅଧିକ ଅନୁରାଗ ଥିବା କାରଣରୁ ବିଭିନ୍ନ ରାଜ୍ୟରୁ ପଣ୍ଡିତମାନେ ସେଠାକୁ ଆସୁଥିଲେ ଓ ଗୁଣଗ୍ରାହୀ ରାଜା ମଧ୍ୟ ସେମାନଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ । ଥରେ ଆଠଗଡ଼ ରାଜ୍ୟର ଜଣେ ପଣ୍ଡିତ ନିଧି ଭଟ୍ଟ ଅବସରକ୍ରମେ ଜଳନ୍ତର ଗଡ଼କୁ ଆସିଥିଲେ । ଅନ୍ୟମାନଙ୍କ ଭଳି ସେ ମଧ୍ୟ ସେଠାରେ ଯଥାଯୋଗ୍ୟ ସମ୍ମାନ ପାଇଥିଲେ ଓ ବଳଦେବଙ୍କ ସହାୟତାରେ ରାଜାଙ୍କ ସହ ପରିଚିତ ହୋଇଥିଲେ ମଧ୍ୟ । କବି ସୂର୍ଯ୍ୟଙ୍କ ପ୍ରତିଭାରେ ସେ ଏକ ପ୍ରକାର ମୁଗ୍ଧ ହୋଇ ଯାଇଥିଲେ । ସେଠାରୁ ଫେରି ଆଠଗଡ଼ ଯିବାପରେ ସେଠିକାର

ପଣ୍ଡିତସମାଜରେ ବଳଦେବଙ୍କ ପ୍ରଶଂସା ଗାନ କରୁଥିଲେ ସେ । କ୍ରମେକ୍ରମେ ତାହା ଆଠଗଡ଼ ରାଜା ବାଳୁକେଶ୍ୱର ହରିଚନ୍ଦନଙ୍କ କର୍ଣ୍ଣଗୋଚର ହୋଇଥିଲା । ତତ୍ପୂର୍ବରୁ ସେ କବିସୂର୍ଯ୍ୟଙ୍କ ପ୍ରତିଭା ସମ୍ପର୍କରେ ଅବଗତ ଥିଲେ । ପୁଣି ତାଙ୍କର ସଭାପଣ୍ଡିତ ନିଧି ରଥଙ୍କଠାରୁ ବଳଦେବଙ୍କ ପ୍ରଶଂସା ଶୁଣିବା ପରେ ତାହାଙ୍କୁ ତାଙ୍କ ରାଜସଭାକୁ ଆସିବା ଲାଗି ନିମନ୍ତ୍ରଣ ପଠାଇଥିଲେ । କିନ୍ତୁ ବଳଦେବ ପ୍ରାୟତଃ ସମ୍ପୂର୍ଣ୍ଣ ରୂପେ ରାଜକାର୍ଯ୍ୟ ଦେଖାଶୁଣା କରୁଥିବା ଯୋଗୁଁ ସମୟ ଓ ସୁବିଧା ଦେଖି ଆଠଗଡ଼ ଯିବେ ବୋଲି ରାଜାଙ୍କୁ ଜଣାଇ ଦେଇଥିଲେ । କିନ୍ତୁ ରାଜା ବାଳୁକେଶ୍ୱର ସେଥିରେ ସନ୍ତୁଷ୍ଟ ହୋଇ ନଥିଲେ । ପୁଣି ନିମନ୍ତ୍ରଣ ସହ ଯୋଡ଼ାଏ ଲୋକ ପଠାଇଥିଲେ ଓ ତାହାଙ୍କୁ ସେଠାକୁ ଅଣାଇବା ଲାଗି ସମସ୍ତ ପ୍ରକାର ବ୍ୟବସ୍ଥା ମଧ୍ୟ କରାଇଥିଲେ ।

ଅନନ୍ୟୋପାୟ ହୋଇ କବିସୂର୍ଯ୍ୟ ବଳଦେବ ରାଜା ରାମଚନ୍ଦ୍ର ଛୋଟରାୟଙ୍କଠାରୁ ବିଦାୟ ମାଗିଥିଲେ ଛଅମାସ ପାଇଁ । ରାଜ୍ୟ ପରିଚାଳନାର ଅନ୍ୟ ବ୍ୟବସ୍ଥା କରି ଆଠଗଡ଼ ଯିବାଲାଗି ସ୍ଥିର କରିଥିଲେ ବଳଦେବ ।

ତାଙ୍କର ପ୍ରଥମା କନ୍ୟା ସେତେବେଳକୁ ବିବାହ ଯୋଗ୍ୟା ହୋଇ ସାରିଥିଲା । ସେଇ ଅବସରରେ ତା ପାଇଁ ବରପାତ୍ର ଅନ୍ୱେଷଣ କରିବା ମଧ୍ୟ ତାଙ୍କର ଅନ୍ୟ ଉଦ୍ଦେଶ୍ୟ ଥିଲା ।

ଜଳନ୍ତରାରେ ଦୀର୍ଘ ବାରବର୍ଷ ରହିବା ପରେ ଏକ ପ୍ରକାର ବିଦାୟ ନେଇ ସେଠାରୁ ଆସିଥିଲେ ବଳଦେବ । ତେବେ ଆଠଗଡ଼ ମଧ୍ୟ ତାହାଙ୍କ ଲାଗି ଆଦୌ ଅପରିଚିତ ନଥିଲା । ସେ ସମଗ୍ର ବାଲ୍ୟ

ବୟସ ସେଠାରେ ହିଁ ବିତାଇ ଥିଲେ କହନ୍ତି ଲୋକେ । ସେଠାରେ ପହଞ୍ଚିବା ପରେ ପରେ ସେ ପଞ୍ଚମ ଆବରରେ ଗୃହୀତ ହୋଇଥିଲେ ରାଜାଙ୍କ ଦ୍ୱାରା ।

ରାଜା ବାଲୁକେଶ୍ୱର ଥିଲେ ଜଣେ ସାହିତ୍ୟରସିକ ଓ ସଙ୍ଗୀତ ପିପାସୁ । ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ପଣ୍ଡିତ ମଣ୍ଡଳ କବିସୂର୍ଯ୍ୟଙ୍କୁ ଯଥୋଚିତ ସମ୍ମାନ ଦେବାପାଇଁ କୁଣ୍ଠାବୋଧ କରି ନ ଥିଲେ ।

ସେଠାରେ ବଳଦେବ ଅବସ୍ଥାନ କରି ଓଡ଼ିଆରେ ନିଜ ନାମରେ ତଥା ସେଠିକାର ରାଜାଙ୍କ ନାମରେ ଭଣିତ କରି କେତେକ ସଙ୍ଗୀତ ରଚନା କରିଥିଲେ । ସମୟକ୍ରମେ ସେ ସବୁ ରାଜସଭାରେ ସ୍ୱରଦେଇ ଗାନ କରୁଥିଲେ ମଧ୍ୟ । ରାଜା ହରିଚନ୍ଦନ କୃଷ୍ଣଭକ୍ତ ଥିବାରୁ ରାଧାକୃଷ୍ଣ ପ୍ରଣୟାତ୍ମକ ତଥା ଭକ୍ତିରସାତ୍ମକ ସଙ୍ଗୀତ ରଚନା କରିବା କବିସୂର୍ଯ୍ୟଙ୍କର ଏକ ପ୍ରକାର ସଙ୍କଳ୍ପରେ ପରିଣତ ହୋଇଥିଲା । ସେ ପ୍ରକାର ଚିନ୍ତାଧାରାରେ ସଙ୍ଗୀତ ରଚନା ଆଠଗଡ଼ଠାରୁ ହିଁ ଆରମ୍ଭ ହୋଇଥିଲା ।

ଏଭଳି ଭାବରେ ସେଠାରେ କିଛୁଦିନ ଅତିବାହିତ କରିବା ପରେ ନିଜର ଅନ୍ୟ ଏକ ଉଦ୍ଦେଶ୍ୟ—କନ୍ୟା ପାଇଁ ବରପାତ୍ର ଅନ୍ୱେଷଣ କରିବାକୁ ପୁଣି ଅଭିମୁଖେ ଯାତ୍ରା କରିଥିଲେ । ଆଠଗଡ଼ ରାଜା ବାଲୁକେଶ୍ୱର ହରିଚନ୍ଦନ ତାଙ୍କର ପରବର୍ତ୍ତୀ ଜୀବନକାଳ ସେଇଠାରେ ବିତାଇବା ଲାଗି ଅନୁରୋଧ ଜଣାଇ-ଥିଲେ । ତେଣେ ଜଳନ୍ତରର ରାଜା ରାମଚନ୍ଦ୍ରଙ୍କୁ ସେ ପ୍ରତିଶ୍ରୁତି ଦେଇ ଆସିଥିଲେ ଯେ ସେ କିଛିଦିନରେ ଫେରିବେ । ଏଣେ ଆଠଗଡ଼

ରାଜାଙ୍କ ସକବଦ୍ଧ ନିମନ୍ତ୍ରଣ । ନଚେତ ସ୍ଥିରକର ପାର ନଥିଲେ ସେ କଣ କରିବେ, କୋଉଠି ରହିବେ ।

ନିଜ କନ୍ୟାପାଇଁ ବରପାତ୍ର ଅନ୍ୱେଷଣରେ ସେ ବାହାରିଲେ ପୁରୀ । କବିସୂର୍ଯ୍ୟଙ୍କ ହାତଖର୍ଚ୍ଚ ପାଇଁ ତିନିଶହ ଟଙ୍କା ଦେବା ସଙ୍ଗେ ସଙ୍ଗେ ପୁରୀ ପର୍ଯ୍ୟନ୍ତ ଯିବାଲାଗି ସେ ସମସ୍ତ ପ୍ରକାରର ବ୍ୟବସ୍ଥା କରି ଦେଇଥିଲେ ।

# ଜଗନ୍ନାଥ ଧାମରେ ବଳଦେବ

ଆଠଗଡ଼ରୁ ରାଜା ବାଲୁକେଶ୍ୱରଙ୍କ ସ୍ନେହଶ୍ରଦ୍ଧା ନେଇ କବିସୂର୍ଯ୍ୟ ପୁରୀରେ ଉପସ୍ଥିତ ହୋଇଥିଲେ ଓ ସେଠାରେ ଜଗନ୍ନାଥ ମହା-ସୁଆରଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ପ୍ରଥମତଃ ପୂର୍ବରୁ ତାଙ୍କ ସହ ବଳଦେବଙ୍କର ପରିଚୟ ଥିଲା, ପୁନଶ୍ଚ ତାହାଙ୍କ ଶ୍ୱଶୁର ପୁରୀ ରାମକୃଷ୍ଣ ମିଶ୍ରଙ୍କ ସହ ମହାସୁଆରଙ୍କ ସୁହୃଦ୍ୟତା ମଧ୍ୟ ଥିଲା । ସେତେବେଳେ ଜଗନ୍ନାଥଙ୍କ ସେବକମାନେ ପ୍ରାପ୍ତ ସଂସ୍କୃତ ଶାସ୍ତ୍ର ଭିତରକୁ ପ୍ରବେଶ କରିପାରୁଥିଲେ । ମହାସୁଆର ମଧ୍ୟ ଥିଲେ ଜଣେ ସଂସ୍କୃତଜ୍ଞ ।

ବଳଦେବ ଜଳନ୍ତର ଓ ଆଠଗଡ଼ର ପଣ୍ଡିତସଭା ମାନଙ୍କରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ ମଧ୍ୟ ତାଙ୍କର ପୁରୀ ଆସିବା ମୂଳରେ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ସେଠିକା ପଣ୍ଡିତମଣ୍ଡଳୀ ଦ୍ୱାରା ଅଭିଜ୍ଞ ହେବା । ଏଣେ କନ୍ୟାପାଇଁ ବରପାତ୍ର ଅନ୍ୱେଷଣ ମଧ୍ୟ ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା । ଉଭୟ ଉଦ୍ଦେଶ୍ୟ କବିସୂର୍ଯ୍ୟଙ୍କ ପାଇଁ କମ୍

ଗୁରୁତ୍ୱପୂର୍ଣ୍ଣ ନଥିଲା । ପୁଣି ଗଜପତି ମହାରାଜା ଯେପରି ଓଡ଼ିଆ ଜାତିର ନମସ୍ୟ ଥିଲେ, ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ସ୍ୱରୂପରେ ଅନ୍ୟ ସମସ୍ତ ରାଜନ୍ୟମଣ୍ଡଳୀ ଯେପରି ତାହାଙ୍କ ନିକଟରେ ନତମସ୍ତକ ହେଉଥିଲେ, ଠିକ୍ ସେହିପରି ତାହାଙ୍କ ପଣ୍ଡିତ ସଭାରେ କୌଣସି ପଣ୍ଡିତ ସମାଦୃତ ନ ହେବା ପର୍ଯ୍ୟନ୍ତ ନିଜକୁ ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ ବୋଲି କହିବା ଲାଗି କୁଣ୍ଠା ଆସୁଥିଲା ।

ସେତେବେଳେ ପୁଣି ରାଜା ଥିଲେ ମୁକୁନ୍ଦଦେବ । ପ୍ରାୟ ସବୁବେଳେ ସେ ପଣ୍ଡିତମଣ୍ଡଳୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଶାସ୍ତ୍ରଚର୍ଚ୍ଚାରେ ସମୟ ଅତିବାହିତ କରୁଥିଲେ । ବିଭିନ୍ନ ରାଜ୍ୟର ଦିଗ୍‌ବିଜୟୀ ପଣ୍ଡିତମାନେ ଶାସ୍ତ୍ରଚର୍ଚ୍ଚା ପାଇଁ ପୁରୀରେ ସମବେତ ହେଉଥିଲେ ।

ଜଗନ୍ନାଥ ମହାଶୁଆର ଥିଲେ ମୁକୁନ୍ଦଦେବଙ୍କ ଅତି ପ୍ରିୟପାତ୍ର । ପ୍ରତିଦିନ ପ୍ରଭାତ ଓ ସନ୍ଧ୍ୟା ଅବକାଶରେ ରାଜା ଜଗନ୍ନାଥ ଦର୍ଶନ କରିବାକୁ ମନ୍ଦିରକୁ ଯାଉଥିଲେ ଓ ମହାଶୁଆର ରାଜାଙ୍କ ଆଦେଶରେ ରାଜାଙ୍କୁ ଠାକୁର ଦର୍ଶନ କରାଇବା ଭାର ନେଇଥିଲେ । ତାଙ୍କର ମାଧ୍ୟମରେ ରାଜାଙ୍କ ନିକଟବର୍ତ୍ତୀ ହେବାଲାଗି ବଳଦେବ ଚେଷ୍ଟା କରିଥିଲେ । ସେଥିପାଇଁ ବେଳେବେଳେ ସଂସ୍କୃତ ଶ୍ଳୋକ ଲେଖି ମହାଶୁଆରଙ୍କ ହାତରେ ଗଜପତିଙ୍କ ନିକଟକୁ ପଠାଉଥିଲେ ।

ଗଜପତିଙ୍କ ପଣ୍ଡିତସଭାରେ ଅନ୍ୟାନ୍ୟମାନଙ୍କ ମଧ୍ୟରେ ଦୁଇଜଣ ଏଭଳି ବିଦ୍ୱାନ ପଣ୍ଡିତ ଥିଲେ ଯେ ଯେକୌଣସି ଶ୍ଳୋକ ସଭାରେ ଥରେ ପାଠ ହେବାପରେ ତାହା ସେମାନେ ମନେରଖି ଦେଇପାରୁଥିଲେ ନିଜର ଧାରଣାଶକ୍ତି ବଳରେ । ଫଳତଃ

ସେମାନେ ରାଜାଙ୍କ ନିକଟରେ ଯେ କୌଣସି ରଚନାକୁ ପ୍ରମାଣ କରାଇ ଦେଉଥିଲେ ଯେ ତାହା ଏକ ପୁରାତନ ରଚନା । ଜଗନ୍ନାଥ ମହାପ୍ରଭୁଆର ବଳଦେବଙ୍କ ଶ୍ଳୋକ ସବୁ ରାଜସଭାରେ ପଢ଼ିବା ପରେ ହିଁ ଭକ୍ତ ପଣ୍ଡିତମାନେ ତାହାକୁ ମଧ୍ୟ ପୁରାତନ ବୋଲି ପ୍ରମାଣିତ କରାଇ ଦେଉଥିଲେ ସେହି ସ୍ଥଳରେ ।

ସେଇମିତି ଭାବରେ କଟୁବଦନ ବିତଯାଉଥିଲା ।

ବଳଦେବ ପ୍ରତିଦିନ ପ୍ରଭାତରେ ସ୍ନାନ ଶେଷକରି ଜଗନ୍ନାଥ ଦର୍ଶନ କରିବା ପରେ ସିଂହଦ୍ୱାର ନିକଟରେ ରାଜଦର୍ଶନ ସାରି ଫେରି ଯାଉଥିଲେ । ଅନେକ ସମୟରେ ଓଡ଼ିଆ ଭାଷାରେ ସ୍ତବ ରଚନା କରି ସକାଳ ଓ ସଞ୍ଜରେ ନିଜର ସ୍ୱଭାବସୁନ୍ଦର ସ୍ୱରରେ ଜଗନ୍ନାଥଙ୍କ ସମୀପରେ ଗାନ କରୁଥିଲେ । ବିଶେଷ କରି ଦୁଇଟି ସ୍ତବ ତାଙ୍କର ଅତି ପ୍ରିୟ ଥିଲା । ସେ ଦୁଇଟି ହେଲା "ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦିଅ ଟେକି" ଏବଂ "କ୍ଷୀରମୟ ସିନ୍ଧୁ, ଜେମା ପ୍ରାଣବନ୍ଧୁ" । ସେ ସ୍ତବ ଗାନ କଲାବେଳେ ଉପସ୍ଥିତ ଜଗନ୍ନାଥ ଭକ୍ତମାନେ ମୁଗ୍ଧ ହୋଇ ଯାଉଥିଲେ ବଳଦେବଙ୍କ ସୁମଧୁର ଗାଣାଙ୍କଣା କଣ୍ଠ ଏବଂ ତାହାଙ୍କ ଭକ୍ତିମତ୍ତା ଦେଖି ।

କଥରେ ଅଛି, ଫୁଲ ଫୁଟିଲେ ବାସ ଚହଟେ । କବି ବଳଦେବଙ୍କ ଓଡ଼ିଆ କବିତା ରଚନାର ପାରଦର୍ଶିତା କ୍ରମେକ୍ରମେ ଉତ୍କଳର ବାରାଣସୀ ପୁରୀ ସହର ମଧ୍ୟରେ ପ୍ରଚ୍ଛଳିତ ହେବାରେ ଲାଗିଲା । ଲୋକେ ବଳଦେବଙ୍କୁ ପ୍ରଶଂସା କରିବା ଆରମ୍ଭ କଲେ । କବି କହିଲା ଜଳନ୍ତର ରାଜସଭା ପଣ୍ଡିତ ତ ଆଉ କବି କହିଲା ପଣ୍ଡିତଙ୍କ ଘର ଆଠଗଡ଼ । ଆଉ ଅନ୍ୟ କେତେକ ତାଙ୍କ ପରିଚୟ

ହେଲେ ଜଣେ ବର୍ଷୀଣୀ ପଣ୍ଡିତ । ତେବେ କ୍ରମେକ୍ରମେ ସାହିତ୍ୟ ସଙ୍ଗୀତପ୍ରେମୀ ଜନଗଣ ତାହାଙ୍କ ସହ ଆଳାପ ଆଲୋଚନା ପାଇଁ ଜଗନ୍ନାଥ ମହାଶୁଆରଙ୍କ ଘରକୁ ଦଉଡ଼ିବା ଆରମ୍ଭ କରିଥିଲେ ।

ସେଇ ଅବସରରେ ଗୋଟିଏ ଓଡ଼ିଆ ସଙ୍ଗୀତ ବଳଦେବ ରଚନା କରିଥିଲେ । "ଅଲଂଘ୍ୟ ଲେଖାରୁ ମୋହନ ପରାଣଧନ ଯାହା ହନେ ହନେ" । ତାହା ଭଣିତ କରିଥିଲେ ରାଜା ମୁକୁନ୍ଦଦେବଙ୍କ ନାମରେ । ସେତେବେଳେ ପଣ୍ଡିତମଣ୍ଡଳୀର ଧାରଣା ଥିଲା ଯେ, କେବଳ ସଂସ୍କୃତରେ ଯମକ ଅଳଙ୍କାର ପ୍ରୟୋଗ କରି ଆଦ-ରସାତ୍ମକ କବିତା ରଚନା କରାଯାଇପାରେ । ଯେତେବେଳେ ପଣ୍ଡିତ ସଭାରେ ମହାଶୁଆର ଉକ୍ତ ସଙ୍ଗୀତଟି ପାଠକଲେ, ଈର୍ଷାପ୍ରଣୋଦିତ ପଣ୍ଡିତମାନେ ମତ ବ୍ୟକ୍ତ କରିଥିଲେ ଯେ, ତାହାଠାରୁ ଉତ୍ତମ ରଚନାମାନ ସେଠାକାର ପାଲବାଲମାନେ ରଚନା କରିପାରିବେ । ଯଦିଓ ମୁକୁନ୍ଦଦେବ ଏ କବିତାଟିର ଭାବ, ଭାଷା ଓ ସାଂଗୀତିକତାରେ ମୁଗ୍ଧ ହୋଇଥିଲେ, ତଥାପି ପଣ୍ଡିତସଭାରମତକୁ ଏଡ଼ିଦେଇ ପାରି ନ ଥିଲେ । ତେବେ ଉକ୍ତ ସଂଗୀତଟିକୁ ସ୍ୱରଦେଇ ଗାନ କରିବା ଲାଗି ଜଣେ ଗାୟକଙ୍କୁ ପୁନଶ୍ଚ ଆଦେଶ ଦେଇଥିଲେ । ହଂଖୟୁବାର ସଙ୍ଗୀତଟି ଗାନ ହେବାପରେ ରାଜାଙ୍କ ମୁଖରୁ ସ୍ୱତଃ ପ୍ରଶଂସା ବାହାରି ଆସିଥିଲା । ତାପରେ ବାଧ୍ୟ ହୋଇ ପଣ୍ଡିତମଣ୍ଡଳୀ ରାଜାଙ୍କୁ ସମର୍ଥନ କରିଥିଲେ ।

ସଙ୍ଗୀତର ଆଲୋଚନା ପରେ ଗଜପତି ମୁକୁନ୍ଦଦେବ ମହାଶୁଆରଙ୍କୁ ଆଦେଶ ଦେଇଥିଲେ, ତା ପରଦିନ ଜଗନ୍ନାଥ ଦର୍ଶନ ବେଳେ ଲକ୍ଷ୍ମୀଙ୍କ ମୋହନଠାରେ କବିସୂର୍ଯ୍ୟ ତାହାଙ୍କ ସହିତ ଯେମିତି ସାକ୍ଷାତ କରିବେ । ମୁକୁନ୍ଦଦେବଙ୍କର ଡାକ ପୂର୍ବରୁ ଯେ ବଳଦେବଙ୍କ

ସହିତ ସାକ୍ଷାତ୍ ହୋଇ ନଥିଲା ତାହା ନୁହେଁ, ସଦାସର୍ବଦା ପଣ୍ଡିତ-ମଣ୍ଡଳୀ ପରିବେଷ୍ଟିତ ରାଜା ଯେତେଥର ସିଂହଦ୍ୱାର ନିକଟରେ ଜଗନ୍ନାଥ ଦର୍ଶନ କରିବାକୁ ଗଲାବେଳେ ଥରେ ଦୁଇଥର ତାହାଙ୍କୁ ଦେଖି ମଧ୍ୟ ଆଲୋଚନା କରିବାର ଅବକାଶ ପାଇ ନଥିଲେ, ବରଂ ଆମ୍ଭାଭିମାନୀ ପଣ୍ଡିତମାନଙ୍କ ଦ୍ୱାରା ସେ ସୁଯୋଗ ଦିଆଯାଇ ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ବଳଦେବ ଆସନ୍ତା ସକାଳ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ ।

# ରତ୍ନଭଣ୍ଡାରର ପାଟଶାଢ଼ୀ

ସେଦିନ ଯେମିତି ବଳଦେବଙ୍କ ପାଇଁ ଥିଲା ଅଗ୍ନିପରୀକ୍ଷାର ଦିନ ।

କଡ଼ଭୋରରୁ ନିଜକୁ ପ୍ରସ୍ତୁତ କରି ସେ ରାଜାଙ୍କ ସହିତ ସାକ୍ଷାତ ପାଇଁ ବଡ଼ ଦେଉଳର ଲକ୍ଷ୍ମୀ ମନ୍ଦିରରେ ଅପେକ୍ଷା କରି ରହିଥିଲେ । ଯଥାସମୟରେ ମୁକୁନ୍ଦଦେବ ପଣ୍ଡିତଗଣଙ୍କ ପରିବେଷ୍ଟନରେ ଯେତେବେଳେ ଲକ୍ଷ୍ମୀ ମନ୍ଦିରରେ ପ୍ରବେଶ କରିଥିଲେ; ଜଗନ୍ନାଥ ମହାସୁଆର ଗଜପତିଙ୍କ ସହ ବଳଦେବଙ୍କ ପରିଚୟ କରାଇ ଦେଇଥିଲେ । ପଣ୍ଡିତମଣ୍ଡଳୀ ମଧ୍ୟ ପ୍ରଥମଥର ଲାଗି ପରିଚିତ ହୋଇଥିଲେ ଆଉ ଜଣେ ପଣ୍ଡିତଙ୍କ ସହିତ ।

ଲକ୍ଷ୍ମୀଙ୍କ ଦର୍ଶନ ଶେଷରେ ରାଜା କିଛି ବଳଦେବଙ୍କ ସହ ସାମାନ୍ୟ ଆଳାପ ଆଲୋଚନା ପରେ ତାଙ୍କ ପାଣ୍ଡିତ୍ୟ ପରୀକ୍ଷା

କରିବା ପାଇଁ ସଂସ୍କୃତର ଗୋଟିଏ ସମସ୍ୟା ଦେଇଥିବେ ପାଦ ପୂରଣ ପାଇଁ ଏବଂ ଆଠଦିନ ମଧ୍ୟରେ ତାହା ସମାଧାନ କରି ଆଣିବା ଲାଗି ସମୟ ନିର୍ଦ୍ଧାରଣ କରିଥିଲେ । ଏପରି ପରୀକ୍ଷା ପ୍ରଥା ପ୍ରାଚୀନ କାଳରେ ପ୍ରଚଳିତ ଥିଲା । ହୁଏତ ଏପରି ଏକ କଠିନ ପ୍ରଶ୍ନ ପଚାରିବା ଲାଗି ତାହାଙ୍କ ପଣ୍ଡିତମାନେ ରାଜାଙ୍କୁ ଉତ୍ସାହିତ କରାଇଥିବେ ନୂତନ ପଣ୍ଡିତଙ୍କୁ ଅପଦସ୍ଥ କରାଇବା ଉଦ୍ଦେଶ୍ୟରେ ।

ରାଜାଙ୍କ ସନ୍ନିହିତ ସେଦିନ ବଳଦେବ ମଙ୍ଗଳ ଆଳତି ଦେଖିବା ଲାଗି ଅନ୍ୟ ପଣ୍ଡିତମାନଙ୍କ ଦେହଣରେ ଯାଇଥିଲେ । ବିଷ୍ଣୁଭକ୍ତ ରାଜା ଆଳତି ଦର୍ଶନ କରି ଫେରୁ ଫେରୁ ରତ୍ନ ସିଂହାସନର ଅନତି ଦୂରରେ କବିସୂର୍ଯ୍ୟଙ୍କୁ କହିଥିଲେ ଯେ ସେ ତ କବିସୂର୍ଯ୍ୟ ଉପାଧି ପାଇଛନ୍ତି, ଲକ୍ଷ୍ମୀଙ୍କ ସେହି ଅବସ୍ଥାକୁ ଲକ୍ଷ୍ୟକରି ଗୋଟିଏ ସଙ୍ଗୀତ ଗାନ କରନ୍ତୁ । ତତ୍‌କ୍ଷଣାତ୍ ବଳଦେବ ଆରମ୍ଭ କରିଥିଲେ "ଧନ୍ୟ ହେ ନବକିଶୋର, ସତ୍ତ୍ୱଧୃତ ଧନଚୋର ନଖିଳ ନାଗର ଶିରୋମଣି" । ତାହା ଥିଲା ନିଜର ପ୍ରତିଭା ସଂପର୍କରେ ଅନ୍ୟ ଆତ୍ମଗର୍ବୀ ପଣ୍ଡିତ-ମାନଙ୍କ ଅଭିମାନକୁ ଦଳିଦେବା ଲାଗି ଏକ ଅପୂର୍ବ ସୁଯୋଗ ।

ବଳଦେବ ସଙ୍ଗୀତଟିର ଭଣିତ କରିଥିଲେ "ବେଲେ ମହୀପତି ଶ୍ରେଣୀ—ମୁକୁଟ ମସ୍ତକମଣି, ଗଜପତି ଶ୍ରୀ ମୁକୁନ୍ଦଦେବ ହେ" । ଅସାଧାରଣ ପ୍ରତ୍ୟୁତ୍ପନ୍ନମତି କବି ବଳଦେବ ଅତି ଅଳ୍ପସମୟ ଭିତରେ ନିଜର ସୁଲଳିତ କଣ୍ଠମାଧୁରୀ ରାଜା ତଥା ଉପସ୍ଥିତ ପଣ୍ଡିତମଣ୍ଡଳୀଙ୍କୁ ଶୁଣାଇ ବିସ୍ମୟାଭିଭୂତ କରାଇ ଦେଇଥିଲେ । ଅଳଙ୍କାରଛଟା ଥିବା କବିସୂର୍ଯ୍ୟଙ୍କ ସଙ୍ଗୀତରେ ରାଜା ବିମୋହିତ ହୋଇ ପଡ଼ିଥିଲେ । ସେ ଏତେ ପ୍ରୀତ ହୋଇଯାଇଥିଲେ ଯେ, ସେରେ ସେରେ ଗୁଣଗ୍ରାହୀ ରାଜା କବିସୂର୍ଯ୍ୟଙ୍କ ଜ୍ଞାନ ପରୀକ୍ଷା ଲାଗି ଦେଇଥିବା ସମସ୍ୟା କଥା

ଭୁଲିଯାଇ ତାଙ୍କଠାରୁ ଗୋଟିଏ ନୂତନ ଉପାଧି ଗ୍ରହଣ କରିବାଲାଗି ଅନୁରୋଧ କରିଥିଲେ । ସଙ୍ଗେ ସଙ୍ଗେ ବଳଦେବ ଉତ୍ତରରେ କହିଥିଲେ, ଯଦି ଗଜପତି ଗୋଟିଏ ଉପାଧି ଦେବାକୁ ଅତ୍ୟନ୍ତ ଆଗ୍ରହୀ ତେବେ ଜଳନ୍ତର ରାଜାଙ୍କଠାରୁ ପାଇଥିବା "କବିସୂର୍ଯ୍ୟ" ଉପାଧିକୁ ହିଁ ନିଜର ବୋଲି ସେ ଗ୍ରହଣ କରିନଅନ୍ତୁ । ଗଜପତି ମୁକୁନ୍ଦଦେବ ସେଥିରେ ଅତ୍ୟନ୍ତ ପ୍ରୀତ ହୋଇ ସଙ୍ଗେ ସଙ୍ଗେ କୋଠ ଭଣ୍ଡାରରୁ ପାଟଶାଢ଼ୀ ଅଣାଇ ନିଜ ହାତରେ କବିଙ୍କ ମୁଣ୍ଡରେ ବାନ୍ଧି ଦେଇଥିଲେ ।

ତାହାହିଁ ଥିଲା ବଳଦେବଙ୍କ ଲାଗି ପରମ ସମ୍ମାନ । ପ୍ରଥମ ଦେଖାରେ ହିଁ ଗଜପତି ବଳଦେବଙ୍କୁ ସମ୍ମାନିତ କରିଥିଲେ । ତାହା ପ୍ରକାରାନ୍ତରେ ତାଙ୍କର ପଣ୍ଡିତମଣ୍ଡଳୀ ପାଇଁ ଥିଲା ଏକ ଚେତାବନୀ । ଶାଢ଼ୀ ବାନ୍ଧିଦେଇ ରାଜା ପୂର୍ବପରି ମନ୍ଦିରର ଅଭିନବ ଦେବଦେବୀଙ୍କ ଦର୍ଶନ ଲାଗି ଚାଲିଗଲେ ।

ଇତି ମଧ୍ୟରେ କବିସୂର୍ଯ୍ୟଙ୍କ ମାନସିକ ଉଲ୍ଲାସ ଏବଂ ନିଜପ୍ରତି ବିଶ୍ୱାସ ପ୍ରବଳ ମୂହୂର୍ତ୍ତିରେ ଦୃଢ଼ ହୋଇଯାଇଥିଲା । ରାଜା ପରୀକ୍ଷା ଲାଗି ଦେଇଥିବା ସଂସ୍କୃତ ସମସ୍ୟାଟି ପୂରଣକରି ସଙ୍ଗେ ସଙ୍ଗେ ତାକୁ ପତ୍ରରେ ଲେଖି ପକାଇଥିଲେ । ଗଜପତି ମନ୍ଦିର ଦର୍ଶନ ଶେଷକରି ଦକ୍ଷିଣ ଦ୍ୱାର ଦେଇ ଯେତେବେଳେ ସିଂହଦ୍ୱାର ନିକଟରେ ପହଞ୍ଚିଲେ, ଉକ୍ତ ସମସ୍ୟାର ସମାଧାନ ବଳଦେବ ଯଥାରୀତି ଆବୃତ୍ତି ପୂର୍ବକ ରାଜାଙ୍କୁ ଉପହାର ଦେଇଥିଲେ । ରାଜଦତ୍ତ ସମୟ ଆଠ ଦିନର ଆବଶ୍ୟକତା ପଡ଼ି ନଥିଲା ।

ତା ପରଦିନ ସଭାରେ କବିସୂର୍ଯ୍ୟଙ୍କ ସମ୍ପର୍କରେ ଆଲୋଚନା ବେଳେ ଉକ୍ତ ପଣ୍ଡିତମାନେ ଯେମାନଙ୍କ ଆସରକୁ ବଳଦେବଙ୍କ

ଆଗମନକୁ ପସନ୍ଦ କରି ନଥିଲେ । ରାଜା ସେମାନଙ୍କୁ ବୁଝାଇ ଦେଇଥିଲେ ଯେ ଯଦି ସେମାନେ ନୂତନ ଆଗନ୍ତୁକଙ୍କୁ ସଂସ୍କୃତ ଶାସ୍ତ୍ର ଆଲୋଚନାରେ ପରାସ୍ତ କରିବେ, ତା'ହେଲେ ସେତ ନିଜେ ହିଁ ଅପମାନିତ ହୋଇ ଚାଲିଯିବେ । ତେଣୁ ତାହାଙ୍କୁ ଆସିବାକୁ ଦିଆଯାଉ । ସେଠାରେ ତାହା ମଧ୍ୟ ସ୍ଥିର ହୋଇଥିଲା ଯେ କବିସୂର୍ଯ୍ୟଙ୍କୁ ପଣ୍ଡିତ ସଭାରେ ଅଲଗା ଆସନ ଦିଆଯିବ, ସମସ୍ତଙ୍କୁ କଳାହନ ଗଜପତି ପ୍ରଥମେ ତାହାଙ୍କୁ ନମସ୍କାର କରିବେ ନାହିଁ । ତା ପରଦିନ କବିସୂର୍ଯ୍ୟ ମହାଶୟଙ୍କ ସହିତ ପଣ୍ଡିତସଭାରେ ଉପସ୍ଥିତ ହେଲେ । ଯଥାବିଧି ରାଜାଙ୍କ ପାଇଁ ସ୍ୱତନ୍ତ୍ର ଆସନ ଥିଲା, ସେହିପରି ସଭାରର ଅନ୍ୟ କେତେକ ବିଦ୍ୱାନ୍ ମଧ୍ୟ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇଥିଲେ । କବି ସଭାସ୍ଥଳରେ ଉପସ୍ଥିତ ହେବା ମାତ୍ରେ ଗଜପତି ତାହାଙ୍କୁ ଯଥ ଯୋଗ୍ୟ ସମ୍ମାନ ପ୍ରଦର୍ଶନ କରିଥିଲେ ଓ ତାହାଙ୍କୁ ନମସ୍କାର ମଧ୍ୟ କରିଥିଲେ । ତତ୍ପର ମୁହୂର୍ତ୍ତରେ କବିସୂର୍ଯ୍ୟ ଅନର୍ଗଳ ଭାବେ ଗାର୍ଦ୍ଧ ପ୍ରାୟ ଅଧଘଣ୍ଟା କାଳ ଏପରି ଆଶୀର୍ବାଦାତ୍ମକ ସଂସ୍କୃତ ଶ୍ଳୋକ ଆବୃତ୍ତି କରିଥିଲେ ଯେ, ସଭାସ୍ଥ ଉପସ୍ଥିତ ସମସ୍ତେ ସ୍ତମ୍ଭିତ ହୋଇଯାଇଥିଲେ । ପଣ୍ଡିତମାନଙ୍କ ବିସ୍ମୟ ଚରମ ସୀମାରେ ପହଞ୍ଚିଥିଲା । ତଥାପି ସେମାନଙ୍କ ଗର୍ବ ଚୂନା ହୋଇ ନଥିଲା ।

ରାଜା ଭାବବିହ୍ୱଳିତ ହୋଇ କବିଙ୍କୁ ନିଜ ନିକଟରେ ଏକ ସ୍ୱତନ୍ତ୍ର ଉଚ୍ଚ ଆସନରେ ଆସୀନ ହେବାଲାଗି ସସମ୍ମାନେ ଆହ୍ୱାନ କରିଥିଲେ । ସେଥିରେ ଅନ୍ୟମାନଙ୍କର ଗାତ୍ରଦାହ ହେବା ସ୍ୱାଭାବିକ । ତା'ପରେ ପୂର୍ବ ପରିକଳ୍ପନା ଅନୁସାରେ ପଣ୍ଡିତଗଣ ବିଭିନ୍ନ ପ୍ରଶ୍ନ ପଚାରି ବିବ୍ରତ କରାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ଆଶୁକବି ପ୍ରତ୍ୟୁତ୍ପନ୍ନମତି ବଳଦେବ ଧୀରସ୍ଥିର ଭାବେ ସେମାନଙ୍କ ଉତ୍ତର

ଏମିତି ଭାବରେ ଦେଇଥିଲେ ଯେ, ପୁଣି ପ୍ରଶ୍ନ କରିବାପାଇଁ ସେମାନଙ୍କର ଧୈର୍ଯ୍ୟ ନଥିଲା ।

ପୁରୀ ପଣ୍ଡିତସଭାରେ ପ୍ରତିଷ୍ଠା ଲାଭ କରିବା ପାଇଁ ବଳଦେବଙ୍କୁ ଖୁବ୍ କମ୍ ସମୟ ଲାଗିଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସେ ସଭାରେ ପ୍ରବେଶ କରିବାପାଇଁ ତାହାଙ୍କୁ ପୁରୀରେ ଦୀର୍ଘ ସମୟ ଅପେକ୍ଷା କରିବାକୁ ପଡ଼ିଥିଲା । ତାପରେ ମନ୍ଦିରେ ମନ୍ଦିରେ କବିସୂର୍ଯ୍ୟ ସଂସ୍କୃତ ଓ ଓଡ଼ିଆରେ କବିତା ଲେଖି ପଣ୍ଡିତ ସଭାରେ ପାଠ କରୁଥିଲେ ଓ ସଂସ୍କୃତ ଶାସ୍ତ୍ର ଆଲୋଚନା କରୁଥିଲେ । ସେଭଳି ଭାବରେ କଟୁଦିନ କଟିଯାଇଥିଲା । ବଳଦେବ ଇତି ମଧ୍ୟରେ ତାହାଙ୍କ ପୂର୍ବ ପୁରୁଷର ଇତିହାସ ସଂଗ୍ରହ କରି ରାଜାଙ୍କୁ ଜଣାଇଥିଲେ ଯେ ତାଙ୍କର ପୂର୍ବ ପୁରୁଷ ପୁରୀର ଅଧିବାସୀ ଭାବେ ଗଜପତିଙ୍କ କୌଳିନ୍ୟ ଅଧିକାର ପାଇଥିଲେ । ସେ ବଂଶର ଉତ୍ତରାଧିକାରୀ ହିସାବରେ ସେଥିଲାଗି ସେ ନିଜେ ମଧ୍ୟ ପ୍ରାର୍ଥୀ । ଗଜପତି ତାହାଙ୍କ କାର୍ଯ୍ୟକଳାପରେ ଏତେ ସନ୍ତୁଷ୍ଟ ହୋଇ ଯାଇଥିଲେ ଯେ ସେଥିପାଇଁ ଏକ ସ୍ୱତନ୍ତ୍ର ସାଧାରଣ ପଣ୍ଡିତସଭା ଡକାଇ ନିଜ ଦସ୍ତଖତ ଓ ମୋହର ଦେଇ ଏକ ସନନ୍ଦ ପ୍ରଦାନ କରିଥିଲେ । ସେଥିରେ ଲେଖାଥିଲା ।

"ଶ୍ରୀଶ୍ରୀଶ୍ରୀ ମୁକୁନ୍ଦଦେବଙ୍କ ୨୩ ଅଙ୍କ ବିଛାମସ ୧୫ ଦିନ ଶ୍ରୀ ପୁରୁଷୋତ୍ତମ ବଡ଼ ଦେଉଳ ସମସ୍ତ ପଣ୍ଡାଙ୍କୁ, ସମସ୍ତ କାହାଣୀ ମାନଙ୍କୁ, ସମସ୍ତ ସେବକମାନଙ୍କୁ, ୧୮ ଗଡ଼ଜାତର ମହାନାୟକ-ମାନଙ୍କୁ, ଷୋଳଶାସନ ମହାଜନମାନଙ୍କୁ, ସାତ ସାଇ ନାୟକମାନଙ୍କୁ ମଧ୍ୟ ଚିଟାଉ, ଆଠଗଡ଼ ନିବାସୀ ବଳଦେବ ରଥଙ୍କୁ କବିସୂର୍ଯ୍ୟ ରାଜଗୁରୁ ମହାପାତ୍ର ପଦ, ସୁନାକେଣ୍ଟ ଝୁମର, ଜୋଡ଼ା ମଶାଲ,

ଘୋଷର ପାବଚ୍ଛ, ପାଉଁଣ କବାଟ, ମଗର ମୁହାଁ ପାଲିଙ୍କି ଓ ସୁବର ଆଡ଼େଣୀ, ହାସ, ପୃଥକ ନମସ୍କାର, ଖିଜମତ ଘର ବୈଠକ ଘର ଗୁଡ଼ । ଏପରି ସମସ୍ତ ପ୍ରତିଷ୍ଠା କାର୍ଯ୍ୟମାନଙ୍କ ଶ୍ରୀଶ୍ରୀଶ୍ରୀ ସ୍ୱାମୀରୁ ଆଜ୍ଞା ହୋଇଥିବାରୁ ଆଜ ତାରିଖ ଆଜ୍ଞାନୁସାରେ ଲେଖିବାକୁ ହୋଇଲା । ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାରରୁ ସୁନାବେଣ୍ଟ ସୁନ୍ଦର ଦେଇ ଚନ୍ଦନ ଅର୍ଗଳିଠାରେ, ରଥ ଉପରେ, ବୃତ ମାସରେ, ପାନସାହାମାନଙ୍କରେ ସୁନ୍ଦର ସେବା ଖଟାଇବ । ଲୁଙ୍ଗଡ଼ା ଘରୁ ଗୀତ ଗୋବିନ୍ଦ ଖଣ୍ଡିଆ ମୋହଡ଼ାଏ ଲେଖାଏଁ ଦେଉଥିବ । ଏହାଙ୍କୁ ଉତ୍ତମ ରୂପେ ବର୍ଣ୍ଣନ କରାଇ ଦେଉଥିବ । ବଳ ବଂଶପୁ ସ୍ୱାମୀଙ୍କ ଚଟାଉ ଲିଖିତ ମତେ ପୁରୁଷାନୁକ୍ରମେ କରୁଥିବ । ଆଟକ ନକରିବ ।”

ସଙ୍ଗୀତପ୍ରିୟ ଗଜପତି ମୁକୁନ୍ଦଦେବଙ୍କ ରୁଚି ଓ ଇଚ୍ଛାନୁଯାୟୀ ଅନେକ ସଙ୍ଗୀତ ରଚନା କରିଥିଲେ କବିସୂର୍ଯ୍ୟ । ସେଭଳି ଭାବରେ ସେ ଠାରେ ପାର୍ଶ୍ୱ ପାଞ୍ଚମାସ ଅତିବାହିତ କରି, ତାଙ୍କ ପୁରୀ ଆସିବା ଅନ୍ୟ ଉଦ୍ଦେଶ୍ୟ ନିଜ କନ୍ୟା ଲାଗି ବରପାତ୍ର ଅନ୍ୱେଷଣରେ ବାହାରିବା ସ୍ଥିର କରିଥିଲେ ।

ପୁରୀରୁ ବିଦାୟ ନେଲାବେଳେ ଗଜପତି ତାହାଙ୍କୁ ପାଥେୟ ସ୍ୱରୂପ ଏକ ହଜାର ମୁଦ୍ରା ସମେତ ମୂଲ୍ୟବାନ ବସ୍ତ୍ର ଓ ରତ୍ନଖଚିତ ସୁବର୍ଣ୍ଣ କୁଣ୍ଡଳ ପ୍ରଦାନ କରିଥିଲେ । ଆଠଗଡ଼ରେ ପହଞ୍ଚିବା ପର୍ଯ୍ୟନ୍ତ ସୁବ୍ୟବସ୍ଥା ମଧ୍ୟ କରିଦେଇଥିଲେ । ଫେରିବା ରାସ୍ତାରେ ଜଟ୍ନା ବରପଦା ( ପୁରୀ ଜିଲ୍ଲା ର )ର ନନ୍ଦସାମନ୍ତ ରାମଚନ୍ଦ୍ର ବ୍ରହ୍ମାଙ୍କ ପୁତ୍ରସହ ନିଜ କନ୍ୟାର ବିବାହ ସ୍ଥିର କରିଥିଲେ । ସେଠାରୁ

ଆଠଗଡ଼ ଦେଇ ଜଳନ୍ତର ଯାତ୍ରା କରିଥିଲେ । କାରଣ ସେତେବେଳେକୁ ଜଳନ୍ତରରେ ତାଙ୍କର ପରିବାର ବର୍ଗ ରହୁଥିଲେ ।

ଯେଉଁ ଉଦ୍ଦେଶ୍ୟ ନେଇ ସେ ଜଳନ୍ତର ଛାଡ଼ି ଯାଇଥିଲେ, ପୁଣି ସେଠାକୁ ଫେରିବା ବେଳକୁ ସେଇ ଉଦ୍ଦେଶ୍ୟ ସାଧିତ ହୋଇଥିଲା ।

## ପୁଣି କାଳିଆ ଲେଉଟିଲା

ବାଲ୍ୟଜୀବନ ବିତାଇଥିବା ବଳଦେବ କବିସୂର୍ଯ୍ୟ ଉପାଧିରେ ଭୂଷିତ ହୋଇ ପୁଣି ଆଠଗଡ଼ ଲେଉଟି ଆସିଥିଲେ ଜୀବନର ଦ୍ୱିତୀୟ ପାହାଚ ଠିକ୍ ଅତିକ୍ରମ କରିବା ବେଳକୁ ।

ପୁରୀରୁ ଜଳନ୍ତର ଫେରିବା ପରେ କବିସୂର୍ଯ୍ୟ ବଳଦେବ ପ୍ରତ୍ୟେକ ସ୍ଥାନରେ ସାଦରେ ଗୃହୀତ ହୋଇଥିଲେ । ସେଠାରେ ତାଙ୍କ କନ୍ୟାର ବିବାହ କାର୍ଯ୍ୟ ସମ୍ପନ୍ନ କରିଥିଲେ ମଧ୍ୟ । ସେଠାରେ ରହିବା ସମୟରେ ଆଠଗଡ଼ ରାଜାଙ୍କର ବାରମ୍ବାର ନିମନ୍ତ୍ରଣ ତାହାଙ୍କ ମାନସିକ ସ୍ଥିତିକୁ ବିଚଳିତ କରି ପକାଉଥିଲେ ସୁଦ୍ଧା ଜଳନ୍ତର ରାଜାଙ୍କ ସ୍ନେହାନୁବନ୍ଧନ ଛିନ୍ନ କରିପାରୁ ନଥିଲେ ସେ ।

କିଛିଦିନ ପରେ ଜଳନ୍ତର ରାଜାଙ୍କ ଦେହାନ୍ତ ହୋଇଥିଲା । ତାପରେ ପରେ ଯଦିଓ ରାଜପରିବାରର ସ୍ନେହ ଶ୍ରଦ୍ଧା ଓ ଭକ୍ତି କବିସୂର୍ଯ୍ୟଙ୍କ ପ୍ରତି ପୂର୍ବଭଳି ଅକ୍ଷୁଣ୍ଣ ରହିଥିଲା, ତଥାପି ସ୍ଥିର କରିଥିଲେ ସପରିବାର ସେ ଆଠଗଡ଼ ଚାଲିଯିବେ !

ତାହାଙ୍କି କରିଥିଲେ ।

ତଥାପି ଜଳନ୍ତର ସନ୍ତତ ସାମ୍ରାଜ୍ୟ ସେ ସମ୍ପର୍କ ସେ ଅବଗତ ରହିଥିଲେ ଏବଂ ରଜା ରାମଚନ୍ଦ୍ରଙ୍କ ଉତ୍ତରାଧିକାରୀମାନେ ବଳଦେବଙ୍କୁ ପୂର୍ବ ସମ୍ମାନ ତଥା ରାଜଦତ୍ତ ବୃତ୍ତି ଆଜୀବନ ଦେଇ ଆସିଥିଲେ ।

ଆଠଗଡ଼ର ରାଜା ବାଲୁକେଶ୍ୱର ଜଗଦେବ ହରିଚନ୍ଦନ ଏକ ଉଦ୍ୟାନ ଗୃହ ନିର୍ମାଣ କରାଇ ଦେଇଥିଲେ କବିସୂର୍ଯ୍ୟଙ୍କ ଲାଗି । ପ୍ରାକୃତିକ ପରିବେଶ ଭିତରେ ବଳଦେବଙ୍କ ବାସଗୃହ ତାଙ୍କର କାବ୍ୟ ଚେତନାକୁ ଜାଗ୍ରତ କରାଇବା ସ୍ୱାଭାବିକ ।

ବୈଷ୍ଣବ ସମ୍ପ୍ରଦାୟଭୁକ୍ତ ଆଠଗଡ଼ର ରାଜା ବାଲୁକେଶ୍ୱରଙ୍କୁ ପ୍ରୀତ କରିବା ଲାଗି ବଳଦେବ ଚନ୍ଦନ ନୂଆ ନୂଆ ସଙ୍ଗୀତ ରଚନା କରି ସନ୍ଧ୍ୟାବେଳେ ଉପହାର ଦେଉଥିଲେ । ସଙ୍ଗୀତର ଆଧାର ରହୁଥିଲା ପ୍ରାୟ ରାଧାକୃଷ୍ଣଙ୍କ ପ୍ରେମ ସମ୍ପର୍କିତ ଆଦିରସାତ୍ମକ କବିତା । କେତେକଙ୍କ ମତରେ କବିସୂର୍ଯ୍ୟଙ୍କର ଜଣେ ଲେଖକ ନିୟୋଗୀ ରହୁଥିଲେ ଏବଂ କବି ମୁହେଁ ମୁହେଁ ସଙ୍ଗୀତ ଡାକିଦେଇ ଗଲାବେଳେ ଲେଖକ, ଲେଖନୀ ଓ ତାଳପତ୍ର ସାହାଯ୍ୟରେ ସଙ୍ଗେ ସଙ୍ଗେ ଲେଖି ଯାଉଥିଲେ । ବେଳେବେଳେ ଖଡ଼ି ସାହାଯ୍ୟରେ କାନ୍ଥରେ ମଧ୍ୟ ସେ ଲେଖି ଯାଉଥିଲେ । ସେ ସମୟରେ ରଚିତ ସଙ୍ଗୀତଗୁଡ଼ିକ ଆଠଗଡ଼ ରାଜା ବାଲୁକେଶ୍ୱର ହରିଚନ୍ଦନଙ୍କ ନାମରେ ଭଣିତ ହୋଇଥିଲା ।

ଆଠଗଡ଼ରେ ତାହାଙ୍କ ରହିବା କାଳରେ ନୟଠକା ଦେବାନ୍ ରାମଚନ୍ଦ୍ର ବ୍ରହ୍ମାଙ୍କ ପୁଅ ଅନେକଗୁଡ଼ିଏ କବିତା ଲେଖିଥିଲେ ।

ତାହା ରାଜାଙ୍କଦ୍ୱାରା ପ୍ରଶଂସିତ ମଧ୍ୟ ହୋଇଥିଲା । ତେଣୁ ରାଜା କବି ବ୍ରହ୍ମାଙ୍କୁ "କବିଚନ୍ଦ୍ର" ଉପାଧି ଦାନ କରିଥିଲେ । କବିସୂର୍ଯ୍ୟ ସେଥିରେ ଦୁଃଖିତ ହୋଇଥିଲେ । ଜଣେ ସାଧାରଣ ମାନବିକ ଗୁଣନେଇ ସେ ଦୁଃଖ କରିବା ସ୍ୱାଭାବିକ । ସ୍ୱାଭିମାନୀ କବି ବଳଦେବ ଥରେ ଏମିତି କଥା ପ୍ରସଙ୍ଗରେ ଶ୍ରୀଯୁକ୍ତ ବ୍ରହ୍ମାଙ୍କୁ କବିଚନ୍ଦ୍ର ଉପାଧି ଦେବାର ଯଥାର୍ଥତା ନଥିବା କଥା ଜଣାଇଥିଲେ । ସେତେବେଳେ କବିଚନ୍ଦ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ରାଜା ତାର ଉତ୍ତର ଦେଇ କହିଥିଲେ ଯେ, ଗୋଟାଏ ସୂର୍ଯ୍ୟ ନିକଟରେ ଅନେକ ଗୁଡ଼ିଏ ଚନ୍ଦ୍ର ରହିବା ଅସମ୍ଭବ ନୁହେଁ । କବିଚନ୍ଦ୍ର ସେତେବେଳ ପର୍ଯ୍ୟନ୍ତ ମନେ କରିଥିଲେ ଯେ, କବିସୂର୍ଯ୍ୟ ଉପାଧି ଭଳି କବିଚନ୍ଦ୍ର ମଧ୍ୟ ଗୋଟିଏ ଉପାଧି । କିନ୍ତୁ ସେ ଯେତେବେଳେ ପ୍ରକୃତ ଅର୍ଥ ବୁଝିଥିଲେ ଯେ ସୂର୍ଯ୍ୟର ଆଲୋକରେ ହିଁ ଚନ୍ଦ୍ର ଆଲୋକିତ, ସେତେବେଳେ ସେ ନିଜକୁ ଭାରି ଅପମାନିତ ମନେକରି ସେହିଦିନ ରାତିରେ କାଳିଙ୍କ ଉପାସନା କରି ବଳଦେବଙ୍କ ଭଳି ଅସାଧାରଣ ଶକ୍ତିଲାଭ କରିବା ପାଇଁ କଲିକତା ଚାଲି ଯାଇଥିଲେ । ସେଠୁ ଫେରିବା ପାଇଁ ପାଖାପାଖି ଦୁଇବର୍ଷ ଲାଗି ଯାଇଥିଲା । ସେଠାରୁ ଫେରିବା ପରେ ସଂସ୍କୃତ କଟପାୟା ଗ୍ରନ୍ଥର ଓଡ଼ିଆ ଅନୁବାଦ କରି ରାଜାଙ୍କୁ ଉପହାର ଦେଇଥିଲେ । ଯଦିଓ ତାହା କବିସୂର୍ଯ୍ୟଙ୍କ ରଚନା ଭଳି ହୋଇପାରି ନଥିଲା ତଥାପି ତାହା ଅତି ନିମ୍ନ ଧରଣର ମଧ୍ୟ ହୋଇନଥିଲା । ହୁଏତ ସାଧନା କରିଥିଲେ କବିଚନ୍ଦ୍ର ବ୍ରହ୍ମା ହିନେ ଯେ କବିସୂର୍ଯ୍ୟଙ୍କ ସମକକ୍ଷ ହୋଇନଥାନ୍ତେ, ସେ କଥା ନିଃସନ୍ଦେହରେ କୁହାଯାଇ ନ ପାରେ ।

କିନ୍ତୁ ଭାଗ୍ୟର ବିଡ଼ମ୍ବନା, କବିଚନ୍ଦ୍ର ଅଳ୍ପକାଳ ମଧ୍ୟରେ ମାନବୀୟ ଜୀବନରୁ ମୁକ୍ତିଲାଭ କରିଥିଲେ ।

# ବନର ହରିଣୀ ଜନ ଗାହନେ

ଅଠଗଡ଼ର ରାଜା ଶ୍ରୀ ବାଲୁକେଶ୍ୱର ହରିଚନ୍ଦନ ଥିଲେ ଅତ୍ୟନ୍ତ ସଂଗୀତପ୍ରିୟ । ଏଣେ କବି ବଳଦେବ ଥିଲେ ସଂଗୀତ ରଚୟିତା । ତେଣୁ କବିସୂର୍ଯ୍ୟଙ୍କ ଆଠଗଡ଼ରେ ଉପସ୍ଥିତି ସମଗ୍ର ଅଞ୍ଚଳକୁ ସଂଗୀତମୟ କରି ପକାଇଥିଲା । ବିଶେଷତଃ ଆଠଗଡ଼ର ଭୌଗୋଳିକ ସ୍ଥିତି ସେ ପରିବେଶକୁ ଆହୁରି ଜୀବନ୍ତ କରିପକାଉଥିଲା ।

କେବଳ ସଂଗୀତର ମାଧୁର୍ଯ୍ୟ ଉପଭୋଗ କରିବାପାଇଁ ରାଜା ବାଲୁକେଶ୍ୱର ତେଲୁଗୁ ଭାଷା ଶିକ୍ଷା କରିଥିଲେ । କାରଣ ସେତେବେଳେ ତେଲୁଗୁ ଲୋକଙ୍କ ସଂଗୀତପ୍ରିୟତା ଅତି ମାତ୍ରାରେ ବୃଦ୍ଧି ପାଉଥିବା ଯୋଗୁଁ ସେମାନେ ସେ କ୍ଷେତ୍ରରେ ଅଧିକ ଅଗ୍ରଣୀ ଥିଲେ । ବିଭିନ୍ନ ବାଦ୍ୟ ବାଦନରେ ମଧ୍ୟ ଯଥେଷ୍ଟ ଦକ୍ଷତା ଥିଲା ତେଲୁଗୁମାନଙ୍କର । ତେଣୁ ଦକ୍ଷିଣ ଓଡ଼ିଶାର ଲୋକକଥା ମାନଙ୍କରେ "ତେଲେଙ୍ଗା ବାଇଦ" ପ୍ରଚଳିତ ହୋଇ ଯାଇଥିଲା ସେମାନଙ୍କ ମଧୁର ବାଦନ ବିଶେଷତଃ ଅତି ଆକର୍ଷଣୀୟ ଥିଲା । ତାଳଲୟ, ରାଗ ରାଗିଣିରେ ଅଧିକ ପ୍ରଗତିଶୀଳ ଥିଲା ତେଲୁଗୁ ଭାଷା, ପୁନଶ୍ଚ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଆନ୍ଧ୍ର ପ୍ରଦେଶର ସନ୍ନିକଟବର୍ତ୍ତୀ ଥିବାରୁ ଓଡ଼ିଆ ଲୋକଙ୍କ ଉପରେ ସେ ଭାଷାର ପ୍ରଭାବ ପଡ଼ିବା ସ୍ୱାଭାବିକ । ବିଶେଷତଃ ତେଲୁଗୁ ପଣ୍ଡିତମାନେ ସେମାନଙ୍କ ନିକଟବର୍ତ୍ତୀ ରାଜସଭାଗୁଡ଼ିକୁ ଭ୍ରମଣ ଉଦ୍ଦେଶ୍ୟରେ ଆସିବା ସହଜସାଧ୍ୟ ଥିଲା ।

ଆଠଗଡ଼ ଆସିଯିବା ପରେ କବିସୂର୍ଯ୍ୟ ପ୍ରତିଦିନ ନୂଆ ନୂଆ ସଙ୍ଗୀତ ରଚନା କରିବାରେ ନିଜକୁ ନିୟୋଜିତ କରିଥିଲେ ଓ ତାହା ପ୍ରତିଦିନ ରାଜାଙ୍କୁ ଭେଟି ଦେଉଥିଲେ । ନିଜେ କବିସୂର୍ଯ୍ୟ ଜଣେ ସୁଗାୟକ ଥିଲେ ମଧ୍ୟ ସେ ଅନ୍ୟାନ୍ୟ ଗାୟକମାନଙ୍କୁ ଉତ୍ସାହିତ କରୁଥିଲେ ନିଜର ସଙ୍ଗୀତ ଗାଇବାକୁ ଦେଇ । ସେଇମିତି ଯେଉଁମାନଙ୍କୁ ବଳଦେବ ଜଣେ ଜଣେ ସୁଗାୟକ କରି ଗଢ଼ି ତୋଳିଥିଲେ ସେମାନଙ୍କ ମଧ୍ୟରେ ତେଲୁଗୁ ତନ୍ତ୍ରୀ ରାଜମଣି ପାତ୍ର, ମଦନମଣି, ନାରାୟଣ ଜେନା ପ୍ରମୁଖ ଥିଲେ ନାମଯାଦା । କବିସୂର୍ଯ୍ୟ ସଙ୍ଗୀତ ରଚନା କରି ପ୍ରଥମେ ସେମାନଙ୍କୁ ଶିକ୍ଷା ଦେଉଥିଲେ ଓ ପରେ ପରେ ସେମାନେ ସଭାସ୍ଥଳରେ ସେସବୁ ଗାନ କରୁଥିଲେ । ସମସ୍ତଙ୍କ ମଧ୍ୟରେ ମଦନମଣି ଥିଲେ ବଳଦେବଙ୍କ ଅତି ପ୍ରିୟ । କାରଣ, ସେ ଦକ୍ଷିଣୀ ମଦ୍ଦଳ ସ୍ୱରର ଅନୁଶୀଳନରେ ନିଜର କଣ୍ଠ ଏପରି ଭାବରେ ଆୟତ୍ତ କରିଥିଲେ ଯେ, ସଙ୍ଗୀତ ଗାନ କଲାବେଳେ ଦୂରବର୍ତ୍ତୀ ସ୍ଥାନମାନଙ୍କର ଶ୍ରୋତୃବର୍ଗଙ୍କ ମନରେ ସତକୁ ସତ ଦକ୍ଷିଣୀ ମଦ୍ଦଳର ଭ୍ରମ ଜାତ ହେଉଥିଲା ।

କବି ବଳଦେବଙ୍କ ନାମ ଚତୁର୍ଦ୍ଦିଗରେ ପ୍ରସ୍ଫୁରିତ ହେବା ସଙ୍ଗେ ସଙ୍ଗେ ଆଠଗଡ଼ର ସଙ୍ଗୀତ ଚର୍ଚ୍ଚା ବିଷୟରେ ମଧ୍ୟ ପ୍ରଚାର ଖୁବ୍ ହୋଇଥିଲା । ସେଇ କାରଣରୁ ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କ ମିଳନପୀଠ ହୋଇ ପଡ଼ିଥିଲା ଆଠଗଡ଼ ।

ଥରେ ବିଜୟ ନଗରର ଜଣେ ବିଶିଷ୍ଟ ସଙ୍ଗୀତାଚାର୍ଯ୍ୟ ଆଠଗଡ଼ର ଖ୍ୟାତି ଶୁଣି ସେଠାରେ ଉପସ୍ଥିତ ହୋଇଥିଲେ । ରାଜା ତାଙ୍କୁ ସାଦରେ ଅଭ୍ୟର୍ଥନା ମଧ୍ୟ ଜଣାଇଥିଲେ । ସେଠାରେ ତାହାଙ୍କର ରହଣି କାଳ ମଧ୍ୟରେ ଅନେକ ଗୁଡ଼ିଏ ସଙ୍ଗୀତ ଆସର

ଅନୁଷ୍ଠିତ ହୋଇଥିଲା । ଦିନେ କଥାପ୍ରସଙ୍ଗରେ ସେ କହିଥିଲେ ଯେ, ଯଦି ଆଠଗଡ଼ର ସଂଗୀତଜ୍ଞମାନେ ସେମାନଙ୍କ ସ୍ୱର ଲହରୀରେ ଅରଣ୍ୟବାସୀ ପଶୁଙ୍କୁ ଆକୃଷ୍ଟ କରାଇପାରିବେ, ତାହେଲେ ପ୍ରକୃତରେ ସେମାନେ ସଂଗୀତରେ ଦକ୍ଷତା ହାସଲ କରିଛନ୍ତି ବୋଲି ଗ୍ରହଣ କରିବେ । ତାହାଙ୍କ ଯୁକ୍ତି ଥିଲା ଆର୍ଯ୍ୟମାନଙ୍କ ମତରେ ସଂଗୀତର ସ୍ୱର ଅଜ୍ଞାନ ଶିଶୁର ରୋଦନ ବନ୍ଦ କରିବାରେ ଯେପରି କ୍ଷମ, ବିବର ମଧ୍ୟରୁ ବିଷଧର ସର୍ପମାନଙ୍କୁ ଆକୃଷ୍ଟ କରିବାରେ ମଧ୍ୟ ସେପରି କ୍ଷମ । "ଶିଶୁର୍ବେତ୍ତି ପଶୁର୍ବେତ୍ତି ବେତ୍ତି ଗୀତରସଂଫଣୀ" — ତାର ପରୀକ୍ଷା ସେ ଚାହିଁଥିଲେ ।

ସେଥିରେ ବିଶ୍ୱାସ ନ ହେବା ସ୍ୱାଭାବିକ । ରାଜା ବାଲୁକେଶ୍ୱରଙ୍କ ସଂଗୀତ ପରିଷଦବର୍ଗ ପଶୁମାନଙ୍କୁ ସଂଗୀତ ସ୍ୱରରେ ଆକୃଷ୍ଟ କରିବା ଅସମ୍ଭବ ମନେକରି ତେଲୁଗୁ ସଂଗୀତାଚାର୍ଯ୍ୟଙ୍କୁ ଉକ୍ତ ପରୀକ୍ଷାର ସମ୍ମୁଖୀନ ହେବାକୁ ଅନୁରୋଧ କରିଥିଲେ । ସେ ଯଦି ସେଥିରେ ସଫଳ ହୁଅନ୍ତି, ତାହେଲେ ତାଙ୍କୁ ଗୁରୁରୂପେ ଗ୍ରହଣ କରିବା ଲାଗି ପ୍ରସ୍ତୁତ ଥିବା କଥା ମଧ୍ୟ ଜଣାଇ ଦେଇଥିଲେ ।

ସେଥିରେ ସେ ସମ୍ମତ ହୋଇଥିଲେ ।

ସେଥିପାଇଁ ସମସ୍ତ ଆୟୋଜନ ହୋଇଥିଲା । ଯଦିଓ କବିସୂର୍ଯ୍ୟ ସେଥିରେ ପ୍ରଥମେ ବିଶ୍ୱାସ କରିପାରୁ ନଥିଲେ, ତେଲୁଗୁ ଆଚାର୍ଯ୍ୟଙ୍କ ଦୃଢ଼ତା ଦେଖି ସେ ପରେ ପରେ ଉକ୍ତ ଶ୍ଳୋକରେ ଆସ୍ଥା ସ୍ଥାପନ କରିବାକୁ ଏକ ପ୍ରକାର ବାଧ୍ୟ ହୋଇଥିଲେ । ସାରା ରାଜ୍ୟର ସଂଗୀତ ରସପିପାସୁ ତଥା ସଂଗୀତଜ୍ଞମାନେ ଆଠଗଡ଼ରେ ସମବେତ ହେବାରେ ଲାଗିଥିଲେ । ପାର୍ବତ୍ୟ ଉପତ୍ୟକାସ୍ଥ ଏକ ନାଟେଶ୍ୱର

ଉପବନ ମଧ୍ୟରେ ନିର୍ମିତ ନିର୍ଜନ ପ୍ରମୋଦଗୃହରେ ପରୀକ୍ଷାର ସମସ୍ତ ଆୟୋଜନ କରାଯାଇଥିଲା ।

ସେଥିପାଇଁ ସମୟ ସ୍ଥିର କରାଯାଇଥିଲା ଏକ ବୈଶାଖ ପୂର୍ଣ୍ଣମୀର ଜୋସ୍ନା ସମୟ ।

ଗ୍ରୀଷ୍ମଋତୁ । ବୈଶାଖ ମାସ । ପୂର୍ଣ୍ଣିମା । ସନ୍ଧ୍ୟା ସମୟ । ପ୍ରାକୃତିକ ଅରଣ୍ୟ ପରିବେଶ । ଜ୍ୟୋସ୍ନା ବିଧୌତ । ଚତୁର୍ଦ୍ଦିଗରେ ନାଗେଶ୍ୱର ବଣ । ପ୍ରସ୍ଫୁଟିତ ନାଗେଶ୍ୱରର ସୁବାସରେ ସମଗ୍ର ସ୍ଥାନ ଉଲ୍ଲସିତ । ଉପସ୍ଥିତ ସଂଗୀତଜ୍ଞ ତଥା ସଂଗୀତ ରସପିପାସୁମାନଙ୍କ ହୃଦୟରେ ଉତ୍କଣ୍ଠା । ତୈଲଙ୍ଗୀୟ ସଂଗୀତାଚାର୍ଯ୍ୟଙ୍କ ମନରେ ଦୃଢ଼ତା । ତାହାଙ୍କ ଗଳାରେ ଏକ ଦୀର୍ଘ ନାଗେଶ୍ୱର ଫୁଲର ମାଳା ।

ସଂଗୀତ ପରୀକ୍ଷା ଯଥା ସମୟରେ ଆରମ୍ଭ ହୋଇଥିଲା । ହଠାତ୍ ସବୁ ଉପସ୍ଥିତ ଜନତା ମନ୍ତ୍ରମୁଗ୍ଧ ହୋଇଥିଲେ । ସତେ ଯେମିତି ଆଚାର୍ଯ୍ୟଙ୍କ ସ୍ୱର ଝଂକାରରୁ ଅମୃତ ଝରୁଥିଲା ।

ନି ଅସମ୍ଭବ ଭାବରେ ପରିବେଶ ସ୍ତବ୍ଧ ।

ସତକୁ ସତ ସେଇ ସ୍ୱରଲହରୀରେ ଏକ ହରିଣୀ ଆକୃଷ୍ଟ ହୋଇ ବଣ ଭିତରୁ କ୍ରମେକ୍ରମେ ଚାଲି ଆସିଥିଲା ସଂଗୀତ ଆସର ଭିତରକୁ । ପରିବେଶ ଏତେ ଶାନ୍ତ ଥିଲା ଯେ, ଜନମାନବର ଉପସ୍ଥିତି ସେ ଯେମିତି ଆଦୌ ଉପଲବ୍ଧି କରିପାରି ନଥିଲା । ମୃଦୁମନ୍ଦ ଗତିରେ ଯାଇ ହରିଣୀଟି ଆଚାର୍ଯ୍ୟଙ୍କ ଅତି ନିକଟରେ ଉପସ୍ଥିତ ହୋଇଥିଲା ।

ଆଶ୍ଚର୍ଯ୍ୟ ମହୋଦୟ ପ୍ରଦର୍ଶନ ସଙ୍ଗୀତର ସ୍ୱର ଶୋଣୁ ଶୋଣୁ ନିଜ ଗଳାରୁ ନାଗେଶ୍ୱର ଫୁଲର ମାଳାଟି ବାହାର କରି ତରୁଣୀର ଗଳାରେ ଲମ୍ବାଇ ଦେଇଥିଲେ । ପରକ୍ଷଣରେ ମନୁଷ୍ୟ କରର ସ୍ପର୍ଶ ପାଇ ହରିଣୀଟି ଦଉଡ଼ି ଦଉଡ଼ି ବନମଧ୍ୟକୁ ଚାଲିଯାଇଥିଲା ।

ସମବେତ ଶ୍ରୋତାମଣ୍ଡଳୀ ପାଷାଣ ପାଲଟିଯାଇଥିଲେ ଆଶ୍ଚର୍ଯ୍ୟର ଚରମ ସୀମାରେ ପହଞ୍ଚି । ଧନ୍ୟବାଦର ଆକାଶ ଯେମିତି ଛିଣ୍ଡିପଡ଼ିଲା ଆଶ୍ଚର୍ଯ୍ୟଙ୍କ ମସ୍ତକ ଉପରେ । ତାହାଙ୍କ ସଙ୍ଗୀତ ଜ୍ଞାନର ଅସୀମତା ବିଶ୍ୱାସ ଆଣି ଦେଇଥିଲା ସଭିଙ୍କ ସମେତ ଅନ୍ୟମାନଙ୍କ ମନ ଭିତରେ ।

କିନ୍ତୁ ଆଶ୍ଚର୍ଯ୍ୟଙ୍କ ସେ କୃତିତ୍ୱ ଫଳରେ ଆନନ୍ଦବିହ୍ୱଳ ହେବା ପରିବର୍ତ୍ତେ ଜଣେ ଅତି ଗମ୍ଭୀର ହୋଇଉଠିଥିଲେ । ସେ ଜଣକ ଥିଲେ କଳ୍ପସୂର୍ଯ୍ୟ । ତାଙ୍କରି ମନ ଭିତରେ ଅସଂଖ୍ୟ ପ୍ରଶ୍ନବାଚୀ । ଯଦି ସଙ୍ଗୀତ ପ୍ରକୃତରେ ପଶୁଙ୍କୁ ଆକର୍ଷଣ କରିପାରେ, ତେବେ କେବଳ ଆଶ୍ଚର୍ଯ୍ୟ କାହିଁକି ସଫଳ ହେବେ ? ଅନ୍ୟମାନେ କାହିଁକି ନୁହେଁ ?

ନିଜକୁ ପ୍ରସ୍ତୁତ କରୁଥିଲେ ବଳଦେବ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବାପାଇଁ । ନିଜର ଶିଷ୍ୟା ତଥା ଗାୟିକା ମଦନମଣିଙ୍କୁ ନିର୍ଦ୍ଦେଶ ଦେଇଥିଲେ ମଞ୍ଚ ଉପରକୁ ଉଠିଯିବାକୁ ।

ପୁଣି ଥରେ ସଭାସ୍ଥଳ ନିସ୍ତବ୍ଧ ହୋଇଉଠିଥିଲା ।

ମଦନମଣି ସେଇ ଉତ୍ସବ ଉଦ୍ଦେଶ୍ୟରେ ରଚିତ ସଙ୍ଗୀତ ଗାନ କରୁଥିଲେ 'ନଗର ସାଙ୍ଗୋଜଣା କଣ୍ଠରେ ଅପୂର୍ବ ଗତ ଝଙ୍କାର ତୋଳ । ଦର୍ଶକମଣ୍ଡଳୀ ପୁଣି କାଇଁର କାଠିର କୁହୁକ ସ୍ପର୍ଶରେ ପାଷାଣବତ୍ ସ୍ଥିର, ନିସ୍ତଳ ।

କିନ୍ତୁ ବନସ୍ଥଳୀ ହରିଣୀ କାହିଁ ? ସେ ଯାଦୁକରର ମନ୍ତ୍ର କ'ଣ ସମସ୍ତେ ଜାଣିପାରିବେ ? ସବୁ ଯାଦୁକରର ମନ୍ତ୍ର କ'ଣ ସମାନ ଭାବରେ କାର୍ଯ୍ୟ କରିପାରେ ?

ମନ୍ତ୍ର ଠିକ୍ କାର୍ଯ୍ୟ କରିଥିଲା । ମଦନମଣିର ସଙ୍ଗୀତ ସ୍ୱର ଲହରୀ ପୁଣି ଉକ୍ତ ହରିଣୀକୁ ଆକୃଷ୍ଟ କରିପାରିଥିଲା । ରାଜା ତଥା ଉପସ୍ଥିତ ଦର୍ଶକମଣ୍ଡଳୀ ସେ ହରିଣୀଟିକୁ ପୁନର୍ବାର ଦେଖିବାର ସୁଯୋଗ ପାଇଥିଲେ । ସେ କିନ୍ତୁ ସେଥର ସଚେତନ ଥିଲା ମଣିଷମାନଙ୍କ ନିକଟରୁ ଦୂରେଇ ରହିବା ଲାଗି ।

ଆଚାର୍ଯ୍ୟ ମହାଶୟ ମଦନମଣିର ପ୍ରଶଂସା ନ କରି ରହିପାରି ନଥିଲେ । ଉପସ୍ଥିତ ସଜ୍ଜନମଣ୍ଡଳୀ ଗୁଣୀର ଗୁଣ କୀର୍ତ୍ତନ କରିବାକୁ କୁଣ୍ଠା ପ୍ରକାଶ କରି ନଥିଲେ ।

ସେଭଳି ଭାବରେ ସଙ୍ଗୀତ ଚର୍ଚ୍ଚାର କ୍ଷେତ୍ର ଥିଲା ଆଠଗଡ଼ । ରାଜା ଥିଲେ ବାଳୁକେଶ୍ୱର ହରିଚନ୍ଦନ ଓ ସଙ୍ଗୀତଜ୍ଞ ଥିଲେ କବିସୂର୍ଯ୍ୟ ବଳଦେବ ରଥ ।

ତଥାପି ସେଇ ଆଠଗଡ଼ରେ ଯେ କବିସୂର୍ଯ୍ୟଙ୍କ ପ୍ରତିଦ୍ୱନ୍ଦୀ ତଥା ନିନ୍ଦୁକ ନଥିଲେ, ତାହା ନୁହେଁ । ବଳଦେବଙ୍କର ଅନେକଗୁଡ଼ିଏ ବ୍ୟଙ୍ଗକବିତା ତାହାଙ୍କ ନିନ୍ଦୁକ ଗୋଷ୍ଠୀ ଗଠନ କରିବାରେ

ସହାୟକ ହୋଇଥିଲା । ସେମାନେ ପ୍ରଚାର କରିଥିଲେ ଯେ, ବଳଦେବ ଏକ ଉପାଧି ପାଇସିବା ପରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ଖୁବ୍ ଅଭିମାନୀ । ନିଜେ ବହୁତ ବେଶୀ ଜାଣିଛନ୍ତି ବୋଲି ଖୁବ୍ ଗର୍ବ କରନ୍ତି ।

ଗୋଟାଏ ଲୋକକୁ ବଦନାମ କରିବା ଲାଗି ଉପାଦାନ ଅନେକ ମିଳେ ସାଧାରଣତଃ ଏବଂ ତାହା ଅତି ତତ୍ପର ପ୍ରଚାରିତ ହୋଇଯାଇ ପାରେ । ସେଥିରେ ବିଚଳିତ ହୋଇପଡ଼ିଥିଲେ ବଳଦେବ । କିଛିଦିନ ଲାଗି କବିତା ବା ସଙ୍ଗୀତ ରଚନା କରିବା ବନ୍ଦ କରିଦେଇଥିଲେ କହିଲେ ଚଳେ ।

କିନ୍ତୁ ରାଜା ବାଲୁକେଶ୍ୱର କବିଙ୍କୁ ନାନାଭାବରେ ଉତ୍ସାହିତ କରିଥିଲେ କବିତା ଲେଖିବା ପାଇଁ । ବଳଦେବ ଅନୁଭବ କରିଥିଲେ ପ୍ରକୃତରେ ସେ ଅନ୍ୟମାନଙ୍କ ପାଇଁ ସଙ୍ଗୀତ ଲେଖୁ ନଥିଲେ, ଲେଖୁଥିଲେ ରାଜାଙ୍କ ତୁଷ୍ଟି ସାଧନ ପାଇଁ । ବିଶେଷ କରି ଆମର ପ୍ରାଚୀନ ସାହିତ୍ୟ ସେଇପରି ଥିଲା । ସାହିତ୍ୟିକ କେବଳ ରାଜା କିମ୍ବା ସେମାନଙ୍କ ପୃଷ୍ଠପୋଷକମାନଙ୍କୁ ଖୁସି କରାଇବା ଲାଗି ସାହିତ୍ୟ ସୃଷ୍ଟି କରୁଥିଲେ । ରାଜାନୁଗ୍ରହ ପାଇଁ କବିସୂର୍ଯ୍ୟ ସବୁ ବଦନାମ ଭୁଲିଯାଇଥିଲେ । ତାଙ୍କ ପ୍ରତି କରାଯାଉଥିବା ଆକ୍ଷେପଗୁଡ଼ିକୁ ସହଜରେ ଏଡ଼େଇ ଦେବାଲାଗି ଅତି ସତର୍କ ହୋଇପଡ଼ିଥିଲେ ।

ସେତିକିବେଳେ କବିସୂର୍ଯ୍ୟ ରଚନା କରିଥିଲେ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ" ଓ ଔଷଧ ରତ୍ନାକର । ସମାଲୋଚିତ ହେବାର ଭୟ ଥିବାରୁ ରଚନାଗୁଡ଼ିକ ନିର୍ଭୁଲ କରିବା ଲାଗି ଚେଷ୍ଟା କରିଥିଲେ ।

# ପାରଳା ଯୁବରାଜଙ୍କ ଗୃହଶିକ୍ଷକ

ଓଡ଼ିଆ ସଙ୍ଗୀତ ସାହିତ୍ୟରେ ଏକ ନୂତନ ଯୁଗ ସୃଷ୍ଟି କରି ଦଶବର୍ଷ ଆଠଗଡ଼ରେ ରହିବା ପରେ କବିସୂର୍ଯ୍ୟଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିତ ହୋଇଯାଇଥିଲା । ସେତିକିବେଳକୁ ପାରଳାଖେମୁଣ୍ଡିର ଗଜପତି ପୁରୁଷୋତ୍ତମ ନାରାୟଣ ଦେବଙ୍କ ମୃତ୍ୟୁ ହୋଇଥିଲା ଏବଂ ତାଙ୍କ ପୁତ୍ର ଅପ୍ରାପ୍ତବୟସ୍କ ଥିଲେ । ତେଣୁ ରାଜ୍ୟର ପରିଚାଳନା କରୁଥିଲେ ମେନେଜର ପଦ୍ମନାଭ ଦେବ । ପଦ୍ମନାଭ ଦେବ ତତ୍କାଳୀନ କଲେକ୍ଟର ମିଷ୍ଟର ବ୍ରେଫୋର୍ଡଙ୍କ ସମ୍ମତିକ୍ରମେ କବିସୂର୍ଯ୍ୟଙ୍କୁ ଯୁବରାଜଙ୍କ ଗୃହଶିକ୍ଷକ ନିଯୁକ୍ତି ପ୍ରସ୍ତାବ କରିଥିଲେ । ମି: ବ୍ରେଫୋର୍ଡ଼ ଓଡ଼ିଆ ଭାଷା ଶିକ୍ଷା କରି କେତେକ କ୍ଷେତ୍ରମାନଙ୍କରେ ଦକ୍ଷତା ମଧ୍ୟ ହାସଲ କରିଥିଲେ ଓ କବିସୂର୍ଯ୍ୟଙ୍କ ଖ୍ୟାତି ମଧ୍ୟ ପୂର୍ବରୁ ଶୁଣିଥିଲେ । ତେଣୁ ମେନେଜରଙ୍କ ଏହି ପ୍ରସ୍ତାବରେ କବିସୂର୍ଯ୍ୟଙ୍କୁ ଶୀଘ୍ର ପଠାଇ ଦେବାଲାଗି ଅନୁରୋଧ ମଧ୍ୟ କରିଥିଲେ ।

ବଳଦେବ ଯୁବରାଜଙ୍କ ଗୃହଶିକ୍ଷକ ଭାବେ ଯୋଗ ଦେଇଥିଲେ ପାରଳାଖେମୁଣ୍ଡିରେ ।

ସେତେବେଳକୁ ପାରଳା ରାଜ୍ୟରେ ଘୋର ଅଶାନ୍ତି ସୃଷ୍ଟି ହୋଇଥିଲା । ତାର କାରଣ ଥିଲେ ସ୍ୱୟଂ ମେନେଜର ସାହେବ । ତାଙ୍କର କାର୍ଯ୍ୟକଳାପରେ ଉତ୍ପୀଡ଼ିତ ହୋଇଉଠିଥିଲେ ରାଜ୍ୟର ହିତୈଷୀ ଓ ଲୋକମାନେ । ସେମାନଙ୍କ ସହିତ ପାରଳାର ବିଧବା

ରଣୀ ମଧ୍ୟ ପରେ ପରେ ଯୋଗ ଦେଇଥିବାରୁ ଅଶାନ୍ତ ବେଳକୁ ବେଳ ଖୁବ୍ ବଢ଼ିବାରେ ଲଗିଥିଲା । ପ୍ରଥମେ ପ୍ରଥମେ ଇଂରେଜ ସରକାର ମନେକରୁଥିଲେ ଯେ, ସେଠିକା ଲୋକେ ବୋଧହୁଏ ଯୁବରାଜଙ୍କୁ ଶାସନ ଗାଦୀରେ ବସାଇବାକୁ ଚାହାନ୍ତି । ସେଥିପାଇଁ ସରକାର ସ୍ଥିର କରିଥିଲେ ପ୍ରକୃତରେ ବୟଃପ୍ରାପ୍ତ ହେବା ପୂର୍ବରୁ ଯୁବରାଜଙ୍କୁ ଗାଦୀ ଅଧୀନ କରାଇଦେବେ । କିନ୍ତୁ ପରେ ପରେ ଅନୁସନ୍ଧାନରୁ ଜଣାପଡ଼ିଥିଲା ଯେ, ଅଶାନ୍ତିର ପ୍ରକୃତ କାରଣ ସେଇଆ ନୁହେଁ । ତେଣୁ ସୈନ୍ୟବାହିନୀ ସାହାଯ୍ୟରେ ବିଦ୍ରୋହ ଦମନ କରା-ଯାଇଥିଲା ।

ଏସବୁ ସମୟ ମଧ୍ୟରେ ପ୍ରଜା ଆନ୍ଦୋଳନର ନେତା ଦୋରା ଓ ବିଶେଷ ସେମାନେ – ଯୁବରାଜଙ୍କ ଗୃହଶିକ୍ଷକ କାବସୂର୍ଯ୍ୟଙ୍କୁ ନିଜ ପକ୍ଷକୁ ଟାଣିନେବାଲାଗି ଯଥେଷ୍ଟ ଉଦ୍ୟମ କରିଥିଲେ ଏବଂ ବିଫଳ ମଧ୍ୟ ହୋଇଥିଲେ । ନିରପେକ୍ଷ ରହି ବଳଦେବ ବରଂ ସରକାରଙ୍କୁ ସାହାଯ୍ୟ କରିଥିଲେ ବିଦ୍ରୋହ ଦମନ ଲାଗି । ଏଣେ ଯୁବରାଜଙ୍କ ଶିକ୍ଷକ ଭାବେ ତାହାଙ୍କ ଉପରେ ଯେପରି ବାହାରର କୌଣସି ପ୍ରଭାବ ନପଡ଼େ ସେଥିପାଇଁ ଅତ୍ୟନ୍ତ ସତର୍କ ଥିଲେ ଓ ବାହାରର ଅଶାନ୍ତ ବାତାବରଣରୁ ସଂପୂର୍ଣ୍ଣ ରୂପେ ଅଲଗା କରି ତାହାଙ୍କୁ ରଖିପାରିଥିବାରୁ ତାହାର ତିଳେମାତ୍ର ପ୍ରଭାବ ଯୁବରାଜଙ୍କ ଉପରେ ପଡ଼ି ନଥିଲା ।

ଯେଉଁମିତି ଭାବରେ ପାରଳାରେ କଟିଗଲା ପାଞ୍ଚବର୍ଷ ।

ସେଠାରେ ଥିବାବେଳେ ସେ ସମ୍ବାଦ ପାଇଥିଲେ ଯେ ଆଠଗଡ଼ର ରାଜା ବାଲୁକେଶ୍ୱର ହରିଚନ୍ଦନ ଏକ ଦୁରାରୋଗ୍ୟ ପୃଷ୍ଠବ୍ରଣ ଯୋଗୁଁ ଶଯ୍ୟାଶାୟୀ ଏବଂ ଅନ୍ତିମ ସମୟରେ ଥିବାରୁ

ତାଙ୍କର କବିବନ୍ଧୁ ଭବସ୍ୱର୍ଣ୍ଣଙ୍କୁ ଦେଖିବାକୁ ବ୍ୟଗ୍ରାନ୍ତ । ବଳଦେବ ଅଧିକ କାଳବିଳମ୍ବ ନକରି ଆଠଗଡ଼ ଯାଇଥିଲେ । ସେଠାରେ ସେ ଖବର ସଂଗ୍ରହ କରିଥିଲେ ଯେ ଅନେକ ପ୍ରକାର ଔଷଧ ପଥ୍ୟର ବ୍ୟବସ୍ଥା ହୋଇଥିଲେ ସୁଦ୍ଧା ରାଜାଙ୍କ ପୃଷ୍ଠଦେଶସ୍ଥ ବ୍ରଣଟିର ଉପଶମ ହୋଇ ନଥିଲା । ଅସ୍ତ୍ର ଚିକିତ୍ସା ଦ୍ୱାରା ତାହାକୁ ଭଲ କରାଇବା ଲାଗି ରାଜାଙ୍କୁ ପରାମର୍ଶ ଦେଇଥିଲେ ବଳଦେବ । କିନ୍ତୁ ରାଜା ସେଥିରେ ସମ୍ମତ ନହୋଇ ବରଂ ମୃତ୍ୟୁକୁ ଶ୍ରେୟସ୍କର ମନେକରିଥିଲେ । ରାଜା ସୁସ୍ଥ ହେବାର କୌଣସି ଆଶା ନଦେଖି ରାଜପରିବାର ଦୁଃଖରେ କାଳାତିପାତ କରୁଥିଲେ ।

ରାଜାଙ୍କୁ ବଞ୍ଚାଇବା ଲାଗି ଦେବୀମନ୍ତ୍ର ଜପ କରିଥିଲେ ବଳଦେବ । ଦେବୀଙ୍କ କୃପାରୁ ହେଉ ବା ଯେ କୌଣସି କାରଣରୁ ହେଉ ତାଙ୍କର ହୃଦୟଙ୍ଗମ ହୋଇଥିଲା ଯେ, କୌଣସିମତେ ରାଜାଙ୍କ ପୃଷ୍ଠଦେଶସ୍ଥ ବ୍ରଣଟି ଫଟାଇବାକୁ ହେବ । ତାହା ହୁଏତ ସମ୍ଭବ ହୋଇପାରେ ଯଦି ରାଜାଙ୍କୁ ହସାଇ ହସାଇ ବେଦମ କରିଦିଆ ଯାଇପାରେ । ତେଣୁ ବଳଦେବ କେବଳ ହାସ୍ୟରସପୂର୍ଣ୍ଣ କବିତା ରାଜାଙ୍କୁ ଉପହାର ଦେବା ଆରମ୍ଭ କରିଥିଲେ । ସ୍ୱାଭାବିକ ହୋଇପାରେ ଯେ ଦୁଃଖରେ ମ୍ରିୟମାଣ ରାଜାଙ୍କୁ ବେଳେବେଳେ ସରସ କରାଇବା ଲାଗି ସ୍ଥିରକରି ସେ ହୁଏତ ସେପରି କାର୍ଯ୍ୟପନ୍ଥା ସ୍ଥିର କରିଥିଲେ ।

ଫଳରେ କବିସୂର୍ଯ୍ୟଙ୍କ ବଚନ ସ୍ୱରଭଙ୍ଗୀ ଓ କୌତୁକପୂର୍ଣ୍ଣ ଭାବ ତାହାଙ୍କ ଉଦ୍ଦେଶ୍ୟ ସଫଳ କରାଇପାରିଥିଲା । ରାଜା ହସି ହସି ବେଦମ ହୋଇଯାଇଥିଲେ ଏବଂ ସେତିକିବେଳେ ପୃଷ୍ଠ ବ୍ରଣଟି ହଠାତ୍ ଫାଟିଯାଇଥିଲା । ତାପରେ କ୍ରମେ କ୍ରମେ ସେ ସୁସ୍ଥ ହେବା

ଆତ୍ମସ୍ଥ କରିଥିଲେ । ବଳଦେବଙ୍କ ଉପରେ ସେ ଅତ୍ୟନ୍ତ ପ୍ରୀତ ହୋଇ ତାହାଙ୍କୁ ଆଜୀବନ ବନ୍ଧୁ ରୂପେ ଆଠଗଡ଼ରେ ରହିବା ଲାଗି ଅନୁରୋଧ କରିଥିଲେ । ତାହାଙ୍କ ଲାଗି ଭତ୍ତା ଖଞ୍ଜି ଦେଇଥିଲେ ବାର୍ଷିକ ଶହେ ଭରଣ ଧାନ ଓ ମାସିକ ଏକଶହ ଟଙ୍କା ।

ଆଠଗଡ଼ ରାଜକର୍ମଚାରୀଙ୍କ ସହ କୌଣସି କାରଣରୁ ଥରେ ମନୋମାଳିନ୍ୟ ହୋଇଥିଲା କବିସୂର୍ଯ୍ୟଙ୍କର । ତେଣୁ ସେ ବାହାନା ଆଳ ଦେଖାଇ ତାହାଙ୍କ ମାସିକ ଭତ୍ତା ପ୍ରାୟ ଛ ମାସ ପର୍ଯ୍ୟନ୍ତ ଦେଇ ନଥିଲେ । ସେଥିଲାଗି ବଳଦେବ ରଚନା କରିଥିଲେ "ଭୁହାଇ ଭୁହାଇ ପୃଷ୍ଠଦେଲେ ହେଲେ ଲୁହା କି ହୋଇବ ସୁନା" । ତାହା ଉକ୍ତ କର୍ମଚାରୀଙ୍କ ନିକଟକୁ ପଠାଇ ଦେଇଥିଲେ । କ୍ରମେ ସେ ସମ୍ବାଦ ରାଜାଙ୍କ କର୍ଣ୍ଣଗୋଚର ହେବାପରେ ବଳଦେବଙ୍କ ପ୍ରାପ୍ୟ ସଙ୍ଗେ ସଙ୍ଗେ ଦେଇଦେବା ଲାଗି ସେ କର୍ମଚାରୀଙ୍କୁ ଆଦେଶ ଦେଇଥିଲେ ।

ସେହି ଆଠଗଡ଼ରେ ଥିବା ସମୟରେ କବିଙ୍କର ଆଠ ବର୍ଷର ଏକ ପୁତ୍ର ସନ୍ତାନର ମୃତ୍ୟୁ ହୋଇଥିଲା । ସେଥିରେ ସେ କିଛିଟା ବିଚଳିତ ହୋଇ ପଡ଼ିଥିଲେ । ମାନସିକ ଶାନ୍ତି ପାଇବା ପାଇଁ ସେ ନୀଳାଚଳ ଧାମ ପୁରୀ ଯାଇଥିଲେ । ପ୍ରାୟ ଦୁଇତିନି ମାସ ସେଠାରେ ବିତାଇ ପୁଣି ଫେରିଆସିଥିଲେ ଆଠଗଡ଼ ।

କିନ୍ତୁ ଚିରନ୍ତନ ଶାନ୍ତି ପାଇପାରି ନଥିଲେ ସେ । କାରଣ ଏକମାତ୍ର ପୁତ୍ରର ମୃତ୍ୟୁପରେ ଭାବୀ ବଂଶଧର ଅଭାବ ଦୂର କରିବା ଲାଗି ପୂର୍ବଖଣ୍ଡ ରାଜ୍ୟରେ ପ୍ରତିଷ୍ଠିତ ଭୁମ୍ବନାଥ ମହାଦେବଙ୍କ ଶରଣାପନ୍ନ ହୋଇଥିଲେ ସେ ପ୍ରାୟ ଦୁଇମାସ ପର୍ଯ୍ୟନ୍ତ । ତାପରେ ତାଙ୍କର ମନସ୍କାମନା ପୂର୍ଣ୍ଣ ହୋଇଥିଲା । ଗାୟତ୍ରୀ ଜପ,

ଶତରୁଦ୍ର ଲେଖକ ଓ ମନ୍ତ୍ରପୂତ ଲେଖ ନମ୍ରା ସମର୍ପଣର ପରିଣାମ ସଫଳ ହୋଇଥିଲ । ସେ ପଣ୍ଡିତମାନଙ୍କ ପୃଷ୍ଠପୋଷକ ହୋଇଥିଲେ ଓ ମହାଦେବଙ୍କ ନାମାନୁସାରେ ତାଙ୍କ ନାମକରଣ କରିଥିଲେ "ଭୁମ୍ବନାଥ" । କିନ୍ତୁ ତାଙ୍କ ଜନ୍ମପତ୍ରିକାରେ ନାମ ଦେଇଥିଲେ ବିଶ୍ୱନାଥ ।

## ଜୀବନର ଶେଷରଶ୍ମି

ଯଦିଓ ରାଜ୍ୟ ପରିଚାଳନା କ୍ଷେତ୍ରରେ ବଳଦେବ ପାରଦର୍ଶିତା ଲାଭ କରିନଥିଲେ, ତଥାପି ସାହିତ୍ୟ ରଚନାରେ ବ୍ୟାଘାତ ସୃଷ୍ଟି ହେବା ଆଶଙ୍କାରେ ସେ ଆଠଗଡ଼ ରାଜାଙ୍କର ବହୁ ବାର ଅନୁରୋଧ ରକ୍ଷା କରି ନଥିଲେ । କିନ୍ତୁ ୧୮୪୧ ମସିହାରେ ଇଂରେଜ ସରକାରଙ୍କ ସେପରି ଏକ ଅନୁରୋଧକୁ ଉପେକ୍ଷା କରିପାରି ନଥିଲେ ।

ସେତେବେଳେ ଗଞ୍ଜାମର ମଞ୍ଜୁଷା ରାଜ୍ୟ ଜନାଗ୍ରଜାରେ ସରକାରଙ୍କ ଅଧୀନରେ ଥିଲା । ସେଠାରେ ପ୍ରାୟ ସବୁବେଳେ ବିଭିନ୍ନ ପ୍ରକାରର ଗଣ୍ଡଗୋଳ ଲାଗି ରହୁଥିଲା । ଯୁବରାଜଙ୍କ ବୟସ ଅତି କମ୍ ଥିବାରୁ ବିଧବାରାଣୀ ପ୍ରାୟଶଃ ରାଜ୍ୟ ପରିଚାଳନା କରୁଥିଲେ । କିନ୍ତୁ ସେ ଥିଲେ ସବୁ ଅନର୍ଥର କାରଣ । ଲୋକଙ୍କ ପ୍ରତି ଅତ୍ୟାଚାର କରିବାରେ ସେ ଥିଲେ ଦକ୍ଷ । ତେଣୁ ସେ ରାଜ୍ୟର ପରିଚାଳନା ପାଇଁ ତତ୍କାଳୀନ ଗଞ୍ଜାମ ଜିଲ୍ଲା କଲେକ୍ଟର ରବର୍ଟ ଆଲେକ୍‌ଜାଣ୍ଡାର ବାନରମ୍ୟାନ କବିସୂର୍ଯ୍ୟଙ୍କୁ ଅନୁରୋଧ

ଜଣାଇଥିଲେ । ସେ ମଧ୍ୟ ଉପଦେଶ ଦେଇଥିଲେ ଯେ ରାଣୀଙ୍କ ସହ ପ୍ରତ୍ୟକ୍ଷ ସଂସର୍ଗ ସେ ଆଦୌ ରଖିବେ ନାହିଁ ।

କଲେକ୍ଟରଙ୍କ ଅନୁରୋଧ ଓ ଉପଦେଶକ୍ରମେ ବଳଦେବ ବ୍ରହ୍ମପୁରରେ ରହି ମଦ୍ଭଗ୍ନ ରାଜ୍ୟର ପରିଚାଳନା କରୁଥିଲେ । ରାଣୀଙ୍କର ଜଣେ ବିଶ୍ୱସ୍ତ ଭୃତ୍ୟ ଥିଲେ ଯଦୁମଣି ରାଯ୍‌ଗୁରୁ ଏବଂ ସେ ନିଜେ ବୁଦ୍ଧିମନ୍ତ ତଥା ଶାସ୍ତ୍ରଜ୍ଞ ଥିଲେ । ଯଦୁମଣିଙ୍କ ମାଧ୍ୟମରେ ରାଣୀ କବିସୂର୍ଯ୍ୟଙ୍କୁ ଅନେକ ବାର ନିମନ୍ତ୍ରଣ କରିଥିଲେ । କିନ୍ତୁ କବିସୂର୍ଯ୍ୟ ତାଙ୍କର କେତେଟା କବିତା ରାଣୀଙ୍କ ନିକଟକୁ ପଠାଇଦେଇ କେବେ ତାହାଙ୍କ ନିକଟକୁ ଯାଇ ନଥିଲେ । ପ୍ରଥମେ ପ୍ରଥମେ ତାହାଙ୍କ କାର୍ଯ୍ୟକଳାପରେ ରାଣୀ ବେଶ୍ ସନ୍ତୁଷ୍ଟ ଥିଲେ ମଧ୍ୟ ପରେ ପରେ ତାହାଙ୍କ ବାରମ୍ବାର ନିମନ୍ତ୍ରଣକୁ କବି ଉପେକ୍ଷା କରୁଥିବା ଦୃଷ୍ଟିରୁ ବିରକ୍ତି ପ୍ରକାଶ କରିଥିଲେ । ସେଇଥିଲାଗି ତାହାଙ୍କ ବିରୁଦ୍ଧରେ ନାନା ପ୍ରକାର ଷଡ଼ଯନ୍ତ୍ର କରିବା ଆରମ୍ଭକରି ଦେଇଥିଲେ । ଯେଉଁ ରାଣୀ ଅନେକ ସମୟରେ ନିଜର ଆତ୍ମଗୋପନ ରଖି ଜଣେ ପୁରୁଷ ବେଶରେ ଘୋଡ଼ାଚଢ଼ି ନିଜ କୂଟନୈତିକ କାର୍ଯ୍ୟକଳାପ ସମ୍ପନ୍ନ କରିବାକୁ ସାଧାରଣ ଲୋକଙ୍କ ନିକଟରେ ପହଂଚ ପାରୁଥିଲେ, ବଳଦେବ ତାହାଙ୍କ ସହିତ ମୁକାବିଲା କରିପାରନ୍ତେ କିପରି ? ସେଥିପାଇଁ ସେ କଲେକ୍ଟରଙ୍କ ଅନୁମତି ନେଇ ମାତ୍ର ଏକବର୍ଷ ପରେ ସେ ସ୍ୱକାରିରୁ ଅବସର ଗ୍ରହଣ କରିଥିଲେ ଏବଂ ସପରିବାରେ ବ୍ରହ୍ମପୁରର ବାଲଜ ପେଣ୍ଠ ସାନ୍ଥରେ ହିଁ ବସବାସ କରିବା ଲାଗି ସ୍ଥିର କରିଥିଲେ ।

କବି ଜୀବନର ଶେଷରଶ୍ମି ଗୁଡ଼ିକ ଅତି ଆଗ୍ରମଦାୟକ ଥିଲା । ଆଠଗଡ଼ରୁ ମାସିକ ବୃତ୍ତି ଶହେଟଙ୍କା ସହ ବାର୍ଷିକ ଶହେ ଭରଣ ଧାନ ପାଇବା ସଙ୍ଗେ ସଙ୍ଗେ ଜଳନ୍ତର, ପାରଳା, ଟିକାଲି,

ରଘୁନାଥପୁର ପ୍ରଭୃତି ରାଜ୍ୟରୁ ଅନେକ ବୃତ୍ତି ପାଇଥିଲେ । ଅନେକ ସମୟରେ ରାଜାମାନେ ତାହାଙ୍କୁ ନିମନ୍ତ୍ରଣ କରିନେଇ ଫେରିବାବେଳେ ଆଶାତିରିକ୍ତ ପୁରସ୍କାର ମଧ୍ୟ ଦେଉଥିଲେ ।

୧୮୪୧ ମସିହା ବୈଶାଖ ମାସରେ କବି ଆଠଗଡ଼ ଯାଇଥିଲେ ରାଜା ବାଲୁକେଶ୍ୱରଙ୍କ ନିମନ୍ତ୍ରଣକ୍ରମେ । କିଛିଦିନ ସେଠି ରହିବା ପରେ ରାଜା ପୁଣି ଅନୁରୋଧ କରିଥିଲେ ଆଜୀବନ ସେଠି ବିତାଇବା ପାଇଁ । କିନ୍ତୁ ସେଥିରେ ସମ୍ପୂର୍ଣ୍ଣ ରାଜି ହୋଇ ନଥିଲେ ମଧ୍ୟ ଅରାଜି ହୋଇ ପାରି ନଥିଲେ । ତେଣୁ ତାହାଙ୍କ ଲାଗି ନିର୍ମିତ ପୁରାତନ ବାସଗୃହ ପୁନଃ ନୂତନ କରି ନିର୍ମାଣ କରାଇ ଦେଇଥିଲେ ରାଜା ବାଲୁକେଶ୍ୱର ।

କିନ୍ତୁ ନିୟତିର ନିୟମ ଭିନ୍ନ ପ୍ରକାରର ।

ଦିନେ କବି ହଠାତ୍ ସେଠାରେ ଜ୍ୱରାକ୍ରାନ୍ତ ହୋଇ ପଡ଼ିଥିଲେ । ତାର ମାତ୍ର ଦୁଇଦିନ ପରେ ସମଗ୍ର ଶରୀରରେ ବସନ୍ତର ଚିହ୍ନ ଦେଖା ଦେଇଥିଲା । ତେଣୁ ରାଜା ବାଲୁକେଶ୍ୱର ସମସ୍ତ ବ୍ୟବସ୍ଥା କରି ତାହାଙ୍କୁ ବ୍ରହ୍ମପୁର ପଠାଇ ଦେଇଥିଲେ । କାରଣ ତାହାଙ୍କ ପରିବାର ବର୍ଗ ସେତେବେଳେ ସେଠାରେ ଥିଲେ ।

ସେଥିରୁ ସେ ଆଉ ମୁକ୍ତିଲାଭ କରିପାରି ନଥିଲେ । ବ୍ରହ୍ମପୁର ଯିବାପରେ ଆଉ ମାତ୍ର ସାତଟି ଦିନ କବିସୂର୍ଯ୍ୟ ବଂଚିରହିଥିଲେ ପରିବାର ବର୍ଗ ସହିତ ।

ବୈଶାଖ ଶୁକ୍ଳ ପବିତ୍ର ଅକ୍ଷୟ ତୃତୀୟା । ଓଡ଼ିଆମାନଙ୍କ ପାଇଁ ଚରମ ବିଷାଦପୂର୍ଣ୍ଣ ଏକ ପର୍ବନେଇ ଆସିଥିଲା । ସେଦିନର ମଧ୍ୟାହ୍ନ ସୂର୍ଯ୍ୟ ଆଉ ଏକ ସୂର୍ଯ୍ୟ—ଓଡ଼ିଶାର କବିମାନଙ୍କ ସୂର୍ଯ୍ୟ—ସହିତ ସଂଗ୍ରାମ କରି ବିଜୟ କେତନ ଉଡ଼ାଇ ଦେଇ ପାରିଥିଲା ।